ପିଲାଙ୍କ ପାଇଁ ବିଜ୍ଞାନ ସାହିତ୍ୟ

# ଜୀବନ

ଡକ୍ଟର ନୃସିଂହ ଚରଣ ପଣ୍ଡା



ନଳିନୀ-ବୁକ୍‌ଷ୍ଟୋର

# ଜୀବନ

ଲେଖକ :

ଡ. ନୃସିଂହ ଚରଣ ପଣ୍ଡା

ପ୍ରକାଶକ :

ଆଦର୍ଶ ପୁସ୍ତକାଳୟ ଷ୍ଟୋର

ବାଲୁବଜାର, କଟକ-୨

ପ୍ରଥମ ସଂସ୍କରଣ—୧୯୯୦ ମୂଲ୍ୟ—ଟ ୧୦-୦୦

# ସୂଚୀ

ବିଷୟ | ପୃଷ୍ଠା





# ପଥର ଓ କୁକୁର

ମିତା ତାଙ୍କ ଘର ବଗିଚାରେ ବୁଲୁଥିଲା । ଗୋଟିଏ କଙ୍କି ଉଡ଼ୁଥିଲା । କଙ୍କିଟି ଗୋଟିଏ ଗୋଲାପ ଗଛର ଡାଳରେ ବସିଲା । ମିତା ଧିରେ ଧିରେ ପାଦରେ ଯାଇ କଙ୍କିଟିକୁ ଧରିବା ଉପରେ ଥିଲା । କଙ୍କି କେମିତି ଜାଣିପାରିଲା, ତରକି ଯାଇ ଉଡ଼ିଗଲା; ଖଣ୍ଡେ ଦୂରରେ ରଙ୍ଗିଣୀ ଫୁଲ ଉପରେ ବସିଲା ।

ମିତା ସେତିକିରେ ନିରାଶ ହୋଇ ନ ଥିଲା । ଥରେ ହାରି-ଗଲେ ସେ ନିରାଶ ହୁଏ ନାହିଁ । ଯେତେଥର ହାରିଗଲେ ବି ସେ ନିରାଶ ହୁଏ ନାହିଁ । ସେ ପୁଣି ଚେଷ୍ଟା କରେ, ଜିତିବା ପର୍ଯ୍ୟନ୍ତ ସେ ଚେଷ୍ଟା ଚଳେଇଥାଏ ।

ମା' କହିଥିବା ବୁଢ଼ିଆଣୀ-କଥାଟିକୁ ମିତା ମନେରଖିଥିଲା । ସତରେ ମା' କଥାଟିକୁ କହିଲାବେଳେ ଦେଖେଇ ଦେଇଥିଲେ । ଦିନେ ମା' ଓ ମିତା ଖଟରେ ବସିଥିଲେ । ଘରେ ଦୁଇ କାନ୍ଥର କୋଣରେ ବୁଢ଼ିଆଣୀଟିଏ ଜାଲ ବାନ୍ଧୁଥିଲା । ଜାଲ ବାନ୍ଧିଲା-ବେଳେ ସେ ଅନେକ ଥର ପଡ଼ିଯାଇ ଥିଲା । କିନ୍ତୁ ପୁଣି ସେ ଉଠୁଥିଲା । ପଡ଼ିଉଠି ସେ ତା' କାମରେ ଲାଗି ଯାଇଥିଲା । ଥରକୁ ଥର ପଡ଼ିଲେ ବି ସେ ହତାଶ ହୋଇ ନ ଥିଲା । ଲାଗି ଲାଗି ବୁଢ଼ିଆଣୀ ତା' ଜାଲକୁ ବାନ୍ଧିଦେଲା । ସେଦିନ ମା' ପଚାରିଥିଲେ "କହ ମା, ବୁଢ଼ିଆଣୀ ଠୁଁ କଣ ଶିଖିଲୁ ?" ମିତା ଉତ୍ତର ଦେଇଥିଲା : "ଥରେ ହାରିଗଲେ ଡରିଯିବ ନାହିଁ । କେତେ-ଥର ହାରିଗଲେ ବି ଛାଡ଼ିଦବ ନାହିଁ । ବାରମ୍ବାର ଚେଷ୍ଟା କଲେ କେବେ ନା କେବେ ସଫଳ ହବ ।"

ରଙ୍ଗଣୀ ଗଛଟା ବଡ଼ ହେଇ ଯାଇଥିଲା । ସେଥିରେ ଗୁମ୍ପା ଗୁମ୍ପା ହୋଇ ନାଲି ଟହ ଟହ ଫୁଲ ଫୁଟିଥିଲା । ଗୋଟିଏ ଫୁଲ-ଗୁମ୍ପା ଉପରେ କଙ୍କିଟି ବସି ଯାଇଥିଲା । ମିତା କଙ୍କି ଆଡ଼କୁ ନଜର ରଖି ଦଉଡ଼ିଲା ।

ଶିଙ୍ଘୁ-ବୁଦାଟିଏ ଥିଲା । ବୁଦା ମୂଳରେ କେତୋଟି ପଥର ରଖା ହୋଇଥିଲା । ପଥରରେ ମିତାର ଗୋଡ଼ ବାଜିଲା । ସେ ଝୁଣ୍ଟି ହେଲା; ପଡ଼ିଗଲା ।



ମିତା ପଥରକୁ ପିଟିଲା

ମିତା ମନେ ମନେ ରାଗିଲା, ପଥରଟା ଉପରେ ରାଗିଲା । ପାଖରେ ଲୁହାଛଡ଼ଟେ ପଡ଼ିଥିଲା । ସେ ଛଡ଼ଟାକୁ ହାତରେ

ଧରିଲା । ପଥରଟାକୁ ପିଟି ନେଲା । ପଥରଟା ଉଁ ଚୁଁ କଲା ନାହିଁ । ମାଡ଼ ଖାଇଲା, ସହି ନେଲା ।

ଏତିକିବେଳେ ଗୋଟିଏ କୁକୁର-ଛୁଆ ରାସ୍ତାରୁ ଫାଟକ ତଳେ ଗଳି ବଗିଚା ଭିତରକୁ ଆସିଲା । ମିତା ଛଡ଼ିଟାକୁ ଧରି କୁକୁର-ଛୁଆ ଆଡ଼କୁ ଦଉଡ଼ିଲା । ସେ କୁକୁର-ଛୁଆ ଉପରେ



ମିତା କୁକୁରକୁ ପିଟିଲା

ଦି ପାହାର ଦେଲା । କୁକୁର-ଛୁଆଟା କେଁ କେଁ ହୋଇ ରଡ଼ି ଛାଡ଼ିଲା । ଅତର୍ଛ୍ୟା କୁକୁରଛୁଆଟା ରାସ୍ତାକୁ ପଳେଇଲା ।

ମିତା ହଠାତ୍ ରୋକି ଗଲା । ସେ ଗୋଟେ କଥା ଭାବିଲା । ସେ ନିଜେ ନିଜକୁ ପଚାରିଲା : "ଏମିତି ହେଲା କାହିଁକି ? ସେ ପଥରକୁ ବାଡ଼େଇଲା । ପଥର ମୋଟେ କାନ୍ଦିଲା ନାହିଁ । ଇସ୍ ଆସ୍ ନ କରି ସେମିତି ରହିଗଲା । ସେ କୁକୁରକୁ ବାଡ଼େଇଲା । କୁକୁରଟା କେଁ କେଁ କରି ରଡ଼ି ଛାଡ଼ିଲା ; ରାଗି ପଳେଇଲା । ତେବେ ପଥର ଓ କୁକୁର ଭିତରେ ଫରକ, କଣ ?"

# ମିଚା ଆଈଙ୍କୁ ପଚାରିଲା

ସେଇ ଦିନମାନଙ୍କରେ ମିତାର ଆଈ ଆସି ରହୁଥିଲେ । ସେ ଆଈଙ୍କ ପାଖକୁ ଗଲା, ଯାଇ କହିଲା "ଆଈ, ଆଈ" ।

"କଣ କିଲୋ ଟୋକୀ ? କ'ଣ ପଚାରିବୁ ?" ମିତାକୁ କୋଳକୁ ନେଇ ଯାଇ ଆଈ କହିଲେ ।

"ଆଈ, ତୁ କହି ପାରିବୁ ?"

"ବୁଢ଼ୀ ହେଲଣି । କେତେ କଥା ଅଙ୍ଗେ ନିଭେଇଛି । କହି ପାରିବି ନା କ'ଣ କିଲେ ?"

"କୁକୁର ଆଉ ପଥର ଭିତରେ ଫରକ କ'ଣ, କହ ?"

"ଆଲୋ, କୁକୁରଟା କୁକୁର ; ପଥରଟା ପଥର । ଆକାଶ ପାତାଳ ପ୍ରଭେଦ । ଦି'ଟା ଯାକ ଭିନେ ଭିନେ । ଦି'ଟା ଜଆରି ଜିନିଷ ଏକା ହେବେ କେମିତି ?"

"କଣ ତୁ କହୁଛୁ, ଆଈ ? ମୋ କଥାଟାକୁ ଏମିତି ଉଡ଼େଇ ଦେଲୁ !"

"ହଇଲୋ, ଉଡ଼େଇ ଦେଲି କେମିତି ? ଏଇ କମଳା ବୁଢ଼ୀର ପେଡ଼ିରେ କଥାର ମଞ୍ଜି ଥାଏ । ଯାହା କହିଲି, ଠିକ୍ କହିଲି ।"

"ମୁଁ ପଥରଟାକୁ ପିଟିଲି । ପଥର କାନ୍ଦିଲା ନାହିଁ । କୁକୁରଟାକୁ ପିଟିଲି । କୁକୁର କାନ୍ଦିଲା । ଏମିତି ହେଲା କାହିଁ ?"

"ହବା କଥାଟା ହବ । ନ ହବା କଥାଟା ନ ହବ । ପଥରଟା କାନ୍ଦିବ କେମିତି କହ ? ସେମିତି ସରକନା ହେଇ ନାଇଁ । ତୁ କହିଲେ କ'ଣ ଅଘଟଣ ଘଟି ଯିବ ?"

ମିତାର ମନ ମାନିଲା ନାହିଁ । କିନ୍ତୁ ସେ ତା' ଆଈକୁ ଆଉ ବେଶୀ କିଛି ପଚାରି ନ ଥିଲା ।

## ମିତା ମା'ଙ୍କ ସାଙ୍ଗରେ କଥାହେଲା

ମିତାର ମା' କଲମ ଧରି କିଛି ଲେଖୁଥିଲେ । ଆଜି ସେ କଲେଜରେ କ'ଣ ପଢ଼େଇବେ, ତା' ବିଷୟରେ କିଛି ଟିପୁଥିଲେ । ସେ ଜୀବ-ବିଜ୍ଞାନ ପଢ଼ାନ୍ତି ।

ବଡ଼ ରୋଷ ମନରେ ମିତା ଯାଇ ମା'ଙ୍କ ପାଖରେ ଠିଆ ହେଲା । ମା' ଜାଣି ପାରିଲେ । ସେ ପଚାରିଲେ, "ତୋର କ'ଣ ହେଇଚି, ମିତା ?"

"କିଛି ହେଇନି, ମା' ।"—ମୁହଁଟାକୁ ଆମ୍ବିଲା କରି ମିତା ଉତ୍ତର ଦେଲା ।

"ତୋ ମନରେ ହରଷ ନାଇଁ । କିଛି ହେଇନି କେମିତି ମ ?"

"ମା', ବଡ଼ ଲୋକଗୁଡ଼ା ଛୋଟ ପିଲାଙ୍କୁ ଠକନ୍ତି । ଏ କଥା ଜାଣି ସାରିଲା ପରେ ମୁଁ ଖୁସି ହେବି କେମିତି, ତୁ କହ ।"—ମିତା ମୁଣ୍ଡ ହଲେଇ ଜୋର୍ ଦେଇ କହିଲା ।

"ତୋତେ କିଏ ଠକିଲା ?"

"ଆଜ୍ଞ"

"ଏମିତି କେମିତି ହେଲା ? ସେ ତୋତେ ଠକି ନ ଥିବ ।"

"କୁକୁର ପଥର ଭିତରେ ଫରକ କ'ଣ ଅଛି, ବୁଢ଼ୀ କିଛି କହୁ ନାହିଁ । ଖାଲି ଧ୍ୟାଡ଼ୁ ଧ୍ୟାଡ଼ୁ ଗୁଡ଼େ କହି ସେ ମୋତେ ଭୁଆଁ ବୁଲଉଚି ।"

"ତୁ କ'ଣ ପଚାରୁଥିଲୁ, ମିତା ?"

"ଆଲୋ ମା' କୁକୁର ଆଉ ପଥର କ'ଣ ସମାନ ?"

"ନା ନା, ଏକା ନୁହନ୍ତି ।"—ମା' ମୁରୁକିହସା ଦେଇ କହିଲେ ।

"ପଥରଟାକୁ ପିଟିଲି; ଟା' ଉଁ ଚୁଁ କଲାନାହିଁ । କୁକୁରଟାକୁ ପିଟିଲି ; ସେଟା କେ କେଁ ହେଇ ଗଡ଼ ଛାଡ଼ିଲା । ଏମିତି କାହିଁକି ହେଲା ? ଦୁ'ଟା ଭିତରେ ଫରକ କ'ଣ ?"

"ଗୋଟେ ସଜୀବ, ଆଉ ଗୋଟେ ନିର୍ଜୀବ । ଫରକ ତ ବହୁତ ।"—ମା' ମିତା ପିଠିରେ ହାତ ରଖି କହିଲେ ।

"କଥାଟା ମୋ ପାଇଁ ଭିଡ଼ ହେଇଗଲା', ମା ।"

"ତୁ ବୁଦ୍ଧିମତୀ, ମିତା । ତୁ ସବୁ ବୁଝିପିବୁ, ସବୁ ଧରିନବୁ । ମୁଁ ତୋତେ ବୁଝେଇ ଦେବି । ତୁ ବୁଝିବୁ । ନ ବୁଝି ପାରିବା ଜାଗାରେ ପଚାରିବୁ । କେବେ ଛାଡ଼ିବୁ ନାହିଁ, ମା' । ନ ବୁଝି ପାରିବା ଯାଏ ପଚାରୁ ଥିବୁ । ଭଲ କଥାଟିଏ ତୋ ମୁଣ୍ଡରେ ଢୁକିଚି । ମୁଁ ତୋତେ ଟିକିନିଖି କରି ବତେଇବି । ମୁଁ ତୋତେ ଠକିବି ନାହିଁ, ମୋଟେ ଠକିବି ନାହିଁ । ଯୋଉଠେ

ଜାଣି ନ ଥିବ, ସେଇଠେ ତୋତେ କହିଦେବ—"ମୁଁ ଜାଣି ନାହିଁ ।" ମା' ମନେ ମନେ ଖୁସି ହୋଇ କହିଲେ ।

"ମା, ତୁ ବଡ଼ ହେଲୁଣି । କଲେଜରେ ପାଠ ପଢ଼ଉଚୁ । ତୋ ପାଇଁ କ'ଣ କିଛି ଅଜଣା ଅବୁଝା ଅଛି ?"—ମିତା ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ଯେତେ ଜାଣିଲେ ସୁଦ୍ଧା ଆହୁରି ଅଜଣା ରହିଯାଏ, ମିତା । ମୁଁ ସବୁ କଥା ଜାଣି ନାହିଁ । କିଛି ଜାଣିଛି ।"

"ସତରେ ତୁ ସବୁ କଥା ଜାଣି ନାହୁଁ ?"—ଅବିଶ୍ୱାସ କଲା ଭଳିଆ ମିତା ପଚାରିଲା ।

"ସତରେ ସବୁ ଜାଣି ନାହିଁ, ମିତା ।"—ମା ହସି ହସି କହିଲେ ।

ମା' ଯାଇ ଗୋଟିଏ କୁନି ଟର୍ଚ୍ଚ ଲାଇଟ୍ ଆଣିଲେ । ଟର୍ଚ୍ଚ ଖଣ୍ଡିକୁ ସେ ମିତା ହାତରେ ଧରେଇ ଦେଲେ । ମା-ଝିଅ ଘର ଭିତରେ ଥିବା ଗୋଟିଏ ଅନ୍ଧାରୁଆ ବଖରାକୁ ଗଲେ । ଟର୍ଚ୍ଚର ବଟନ୍ ଚପିବାକୁ ମା' ମିତାକୁ କହିଲେ । ମିତା ସେଆ କଲା ।

ଯୋଗକୁ ଗୋଟେ ବିସ୍କୁଟ ଡବା ଉପରେ ଆଗ ଆଲୁଅ ପଡ଼ିଲା । ମିତା ଡବାଟାକୁ ଟେକି ନେଲା । ଡବାରୁ ବିସ୍କୁଟ ଖୋଲି ସେ ଦି'ଖଣ୍ଡ ମୁସୁ ମୁସୁ କରି ଖାଇଦେଲା ।

ଆଉ ଟିକିଏ ଆଗକୁ କ'ଣ ଅଛି ବୋଲି ମା ପଚାରିଲେ ।'

"ଏଟା ଛୋଟିଆ ଟର୍ଚ୍ଚଟା, ମା । କୁନି—ଜାଗାଟିରେ ଆଲୁଅ ପଡ଼ୁଚି । ଆଗରେ କ'ଣ ଅଛି, ଦିଶୁ ନାଇଁ ।"— ପାଟିରେ ବିସ୍କୁଟ ଚୋବେଇ ମିତା ଉତ୍ତର ଦେଲା ।

"ଟର୍ଚ୍ଚଟାକୁ ଆଗକୁ ଦେଖା ।"—ମା' କହିଲେ ।

ମିତା ସେୟା କଲା । ଆଗରେ ମୁଢ଼ିଡବାଟିଏ ଥିଲା । ମୁଢ଼ି ଅଛି ବୋଲି ମିତା ବଡ଼ ପାଟିରେ କହିଲା ।

"ତା' ଆଗକୁ କ'ଣ ଅଛି ?"—ମା' ପୁଣି ପଚାରିଲେ ।

ମିତା ଟର୍ଚ୍ଚଟାକୁ ଆଉ ଟିକିଏ ଆଗକୁ ଦେଖେଇଲା । ସେଇ ଜାଗାଟିରେ କିଛି ନ ଥିଲା ।

"ମା, ତା' ଆଗରେ କିଛି ନାହିଁ ।"— ମିତା କହିଲା ।

ମା' ମିତାକୁ ସାଙ୍ଗରେ ନେଇ ପୁଣି ବସିବା ଘରେ ବସିଲେ । ସେ ମିତାକୁ ବୁଝେଇ ଦେଲେ । ମିତା କୁନି ଟର୍ଚ୍ଚ-ଲାଇଟରେ ଯାହା କଲା, ମା' ସେୟା କରନ୍ତି, ଅନ୍ୟମାନେ ସେୟା କରନ୍ତି । ମଣିଷ ସବୁ କଥା ଜାଣି ନ ଥାଏ । ସେ କିଛି ଜାଣିଥାଏ, ବହୁତ କିଛି ଜାଣି ନ ଥାଏ । ଜ୍ଞାନର ଆଲୁଅ ଟର୍ଚ୍ଚର ଆଲୁଅ ପରି । ମଣିଷ ଯେତକ ଯେତକ ଅଧିକ ଜାଣୁଥାଏ, ତା'ର ସାମ୍ନାରେ ଅନ୍ଧାର ସେତକ ସେତକ ଦୂରେଇ ଯାଉଥାଏ ।

## ପଥର ପଡ଼ି ରହିଲା, କୁକୁର ପଳେଇଲା

ସେ ଦିନ ରବିବାର ହୋଇଥିଲା । ମିତା ଟି.ଭି ଦେଖୁଥିଲା । ମା' ଖବରକାଗଜ ପଢ଼ୁଥିଲେ ।

ଟି.ଭି ଦେଖି ସାରି ମିତା ମା'ଙ୍କ ପାଖକୁ ଆସିଲା ଏବଂ ସଜୀବ-ନିର୍ଜୀବ କଥା ପଚାରିଲା ।

ମା' ପ୍ରଥମେ 'ସଜୀବ' ଓ 'ନିର୍ଜୀବ' ଶବ୍ଦ ଦୁଇଟିର ଅର୍ଥ ବୁଝେଇ ଦେଲେ । ଯାହାର ଜୀବ ଅଛି, ତାହା ସଜୀବ । 'ସହିତ'

ଅର୍ଥରେ 'ସ' ଲାଗିଛି । ସଜୀବକୁ ଆମେ 'ଜୀଅନ୍ତା' ବୋଲି କହିପାରିବା । ଯାହାର ଜୀବ ନାହିଁ, ତାହା ନିର୍ଜୀବ । 'ନାହିଁ' ଅର୍ଥରେ 'ନିର୍' ଲାଗିଛି । ଆମେ ଏହାକୁ 'ଅଜୀବ' ବି କହିପାରିବା । ଶବ୍ଦର ପୂର୍ବରେ 'ନିଃ' ବା 'ଅ' ଲାଗିଲେ 'ନାହିଁ' ଅର୍ଥ ହୁଏ ।

"ଯାହା ବୁଝି ନେଲି, ମା' । ତୁ ମୋତେ ବହୁତଥର କହୁଛୁ, 'ଭୟ କରିବୁ ନାହିଁ ।' ମୁଁ ତାକୁ ଆଉ ଗୋଟେ ପ୍ରକାରେ କହିବି, 'ନିର୍ଭୟ ହବୁ, ଅଭୟ ହବୁ' । ସେମିତି ମଣିଷ ଓ ଅମଣିଷ । 'ଅ' ଅକ୍ଷର ଲାଗିଗଲେ ଅର୍ଥ ଓଲଟା ହେଇ ଯାଉଛି । ଆଉ 'ସ' ଅକ୍ଷରଟା ଲାଗିଗଲେ 'ସହିତ' ବୁଝଉଚି । ତୁ ମୋତେ ଭଲ କଥାଟିଏ କହିଦେଲୁ, ମା' । ମୁଁ ଯାହାକୁ ମନେ ରଖିଥିବି; ଯୋଉଠେ ଦରକାର ପଡ଼ିବ ତାକୁ କାମରେ ଲଗେଇ ଦେବି । ତେବେ, ମା' ଅସଲ କଥାଟିର ଅର୍ଥ କହିଲୁ ନାହିଁ କାହିଁକି ?"— ମିତା ହାତ ହଲେଇ ହଲେଇ କହିଲା ।

"ସେଇ ଅସଲ କଥାଟି କ'ଣ କିଲୋ, ଝିଅ ?"— ମା ପଚାରିଲେ ।

"ପଥରଟାକୁ ପିଟିଲି । ସେଟା କାନ୍ଦିଲା ନାହିଁ, ହଲଚଲ ହେଲା ନାହିଁ; ପଳେଇଲା ନାହିଁ । କୁକୁରଟାକୁ ପିଟିଲି । ସେଟା କେଁ କେଁ କରି ରଡ଼ି ଛାଡ଼ିଲା, ଅଡଛୁଆ ପଳେଇଲା । କୁକୁର ଯେମିତି କଲା, ପଥର ସେମିତି କଲା ନାହିଁ କାହିଁ ?"—ଆଡା-କାବା ହେଲା ପରି ମୁହଁକୁ କରି ମିତା ପଚାରିଲା ।

"ପଥରଟା ନିର୍ଜୀବ; କୁକୁରଟା ସଜୀବ । ଏଇଠେ ଫରକ ରହି ଯାଉଚି; ମିତା ।"— ମା ଝିଅର ପିଠିରେ ହାତ ଆପୁଡ଼େଇ କହିଲେ ।

"ତୁ ତ ମା' ଖସିବାକୁ ଚେଷ୍ଟା କରୁଚ, ମୋ ପ୍ରଶ୍ନର ଉତ୍ତର ଦଉ ନାହୁଁ । କହୁଲୁ, ସେଇ ଜୀବ ଜନଷଟା କ'ଣ ? ମୁଁ ବୁଝିଲି, ପଥରର ଜୀବ ନାହିଁ, କୁକୁରର ଜୀବ ଅଛି । ସେଇ ଜୀବ କଥାଟା କ'ଣ ?"– ମିତା ଉତ୍ତର ପାଇବାକୁ ଅଡ଼ି ବସିଲା ।

ମା' ବୁଝେଇ ଦେଲେ । 'ଜୀବ' କ'ଣ, ସେଟାକୁ ସେ ଶେଷରେ କହିବେ । ଜୀବର କେତୋଟି ଲକ୍ଷଣକୁ ସେ ଆଗେ କହିବେ । ଜୀବର ଏଟା ଗୋଟେ ଲକ୍ଷଣ । ମିତା ପଥରଟାକୁ ପିଟିଲା, କୁକୁରଟାକୁ ପିଟିଲା । ପିଟାଖାଇ ମଧ୍ୟ ପଥର କିଛି ଲକ୍ଷଣ ଦେଖେଇଲା ନାହିଁ । କିନ୍ତୁ କୁକୁର ଉପରେ ପାହାରଟା ବାଜିଲା ମାତ୍ରେ ସେ ଲକ୍ଷଣ ଦେଖେଇଲା ।

ମା' ଚଉକଟାକୁ ଚିମୁଟିଲେ । ଚଉକ ଯେମିତ ଥିଲା, ସେମିତ ପଡ଼ି ରହିଲା । ସେ ମିତାର ଡେଣାକୁ ଟିକିଏ ଚିମୁଟି ଦେଲେ । ମିତା ତା'ର ଡେଣାକୁ ଘୁଞ୍ଚେଇ ନେଲା ।

ମା' କଅଁଳ ଖୁଣ୍ଟାଟେ ଆଣି ମାଟି ଉପରେ ରଖିଲେ । ମାଟି କଅଁଳ ତାତ ଖାଇଲେ ସୁଦ୍ଧା ନିଶ୍ଚଳ ହେଇ ପଡ଼ି ରହିଲା । ତାପରେ ସେ ହାଣ୍ଡିଶାଳକୁ ଗଲେ, ଗୋଟେ ଦିଆସିଲି ଆଣିଲେ । ସେ ଖଣ୍ଡେ ଦିଆସିଲି ଜଳେଇ ଏବଂ ଫୁଙ୍କି କରି ଜଳୁଥିବା ଦିଆସିଲି କାଠିଟାକୁ ଲିଭେଇ ଦେଲେ । ତରତର ହେଇ ସେ ଦିଆସିଲି କାଠିର ମୁଣ୍ଡିଟାକୁ ମିତାର ଜଙ୍ଘରେ ଲଗେଇ ଦେଲେ । ମିତା 'ଇସ୍' କରି ଗୋଡ଼ଟାକୁ ଘୁଞ୍ଚେଇ ନେଲା ।

ମା' ଯାଇ ଫ୍ରିଜ୍ ଖୋଲିଲେ । ତା' ଭିତରୁ ସେ ବରଫ ଖଣ୍ଡେ ଆଣିଲେ । ବରଫ-ଖଣ୍ଡକୁ ସେ ଥାଳିଆ ଉପରେ

ରଖିଲେ । ଆଳଅ। ଯେମିତ ଥିଲା, ସେଇମିତ ରହିଗଲା । ବରଫ ଖଣ୍ଡକୁ ନେଇ ସେ ମିତାର ଗାଲରେ ଛୁଁଇ ଦେଲେ । 'ଓଃ' କହି ମିତା ମୁଣ୍ଡକୁ ଘୁଞ୍ଚେଇ ଦେଲା ।

ମା' ପିନ୍‌ଟେ ଆଣିଲେ । ପିନ୍‌ଟା ଦ୍ୱାରା ସେ କାନ୍ଥର ଏଣେ ତେଣେ ଫୋଡ଼ିଲେ । କାନ୍ଥ ନିଶ୍ଚଳ ହୋଇ ରହିଥିଲା, ଉଁ ଚୁଁ କରୁ ନ ଥିଲା । ସେ ତାଙ୍କ ଘରେ ଥିବା ପୋଷା ବିଲେଇଟିକୁ ଆଣି କୋଳରେ ବସେଇଲେ । ବିଲେଇର ନାଁ 'ରାଣୀ' । ରାଣୀର ପିଠିରେ ମା' ପିନ୍ ମାରିଲେ । ରାଣୀ 'ମ୍ୟାଉଁ, ମ୍ୟାଉଁ' କରି ପାଟି କଲା ; ମା'ଙ୍କ କୋଳରୁ ଡେଇଁ ପଡ଼ି ପଳେଇଲା ।



ଉଦ୍ଦୀପନ — ଅନୁକ୍ରିୟା

ମା' କହିଲେ, "ବର୍ତ୍ତମାନ ବୁଝିଗଲୁ, ଝିଅ ? ସଜୀବ ଉଦ୍ଦୀପନ ପାଇଲେ ଅନୁକ୍ରିୟା ଦେଖାଏ । ନିର୍ଜୀବର ଅନୁକ୍ରିୟା ରହେ ନାହିଁ ।

"ଏଇ ଶବ୍ଦ ଦୁଇଟି ମୋ ପାଇଁ ଭିଡ଼ ହେଇଗଲା, ମା' ।" —ମିତା କହିଲା ।

"କେତେ ଗୁଡ଼ିଏ ଉଦାହରଣ ଦେଇ ବୁଝେଇ ଦେଲି । ସେଇ କଥାଗୁଡ଼ିକୁ ବୁଝିଲୁ କି ନାହିଁ ?"

"ବୁଝିଲି, ମା' ।"

"ତା' ହେଲେ, ଏଇ ଶବ୍ଦ ଦୁଇଟିକୁ ମଧ୍ୟ ବୁଝିଗଲୁ । ଶବ୍ଦ ଦୁଇଟି ତୋ ପାଇଁ ଭିଡ଼ ହେଇ ନାହିଁ, ନୂଆ ହେଇଛି । ଏଇମିତି ଆସ୍ତେ ଆସ୍ତେ ନୂଆ ନୂଆ ଶବ୍ଦ ଶିଖିଯିବୁ । ସବୁ ଶବ୍ଦ ତୋ ମୁଣ୍ଡରେ ରହିଯିବ, ତୋ ଜିଭ ଅଗରୁ ବାହାରିବ ।" ଝିଅର ଥୋଡ଼ିଟିକୁ ଧରି, ମୁରୁକି ମୁରୁକି ହସି ମା' କହିଲେ ।

## ଚୁମ୍ବକର କ'ଣ ଜୀବନ ଅଛି ?

ମିତାର ବଡ଼ ଭାଇର ନାଁ ରାଧୁ । ମିତାଠାରୁ ରାଧୁ ଚାରି ବରଷରେ ବଡ଼ । ରାଧୁ ତା ଭଉଣୀକୁ ବହୁତ ଭଲ ପାଉଥିଲା । ଭାଇଭଉଣୀ ଫୁରୁସତ ପାଇଲେ ଖେଳନ୍ତି, ବୁଲନ୍ତି, ମଜାଗପ କରନ୍ତି ।

ସେଦିନ ରାଧୁର ସ୍କୁଲରେ ବିଜ୍ଞାନ ପ୍ରଦର୍ଶନୀ ହେଉଥିଲା । ପ୍ରଦର୍ଶନୀ ଦେଖି ଯିବାକୁ ରାଧୁ ମିତାକୁ କହିଲା । ମିତା ରାଜି ହେଲା । ଦିହେଁ ଲୁଗାପଟା ପିନ୍ଧିଲେ, ଖାଇଲେ, ପ୍ରଦର୍ଶନୀ ଦେଖିବାକୁ ଚାଲିଗଲେ ।

ପ୍ରଦର୍ଶନୀର ଗୋଟିଏ ଜାଗାରେ ଚୁମ୍ବକ ଥିଲା । ଦୁଇଟି ଛୁଞ୍ଚି–ଚୁମ୍ବକ ଥିଲା । ପ୍ରତି ଚୁମ୍ବକଟି ତା'ର ଗୋଡ଼ରେ ଠିଆ ହୋଇ ଥିରି ଥିରି ହଲୁଥିଲା ।

ଶିକ୍ଷିକା ଚୁମ୍ବକର କୌଶଳ ଦେଖାଉଥିଲେ, ଚୁମ୍ବକ ବିଷୟରେ ବୁଝଉଥିଲେ । ପ୍ରତି ଚୁମ୍ବକର ଦୁଇଟା ମେରୁ ଥାଏ




## ଲୁହା କଣା ଅନୁକ୍ରିୟା ଦେଖାଓ

ବୋଲି ସେ କହିଲେ । ଗୋଟେ ମେରୁକୁ ସେ 'ଯୁକ୍ତ' ବୋଲି କହିଲେ । ଆଉ ମେରୁଟାକୁ ସେ 'ବିଯୁକ୍ତ' ବୋଲି କହିଲେ ।

ଯେତେବେଳେ ଦଣ୍ଡା ଚୁମ୍ବକର 'ଯୁକ୍ତ' ମେରୁ ପାଖେଇ ଆସୁଥିଲେ , ଚୁମ୍ବକ ଦଣ୍ଡା ସେତେବେଳେ ମୁହଁ ମୋଡ଼ ଦେଇ ଦୂରେଇ ଯାଉଥିଲେ ।

ଯେତେବେଳେ ଗୋଟେ ଚୁମ୍ବକର 'ଯୁକ୍ତ' ମେରୁ ଆଉ ଚୁମ୍ବକର 'ବିଯୁକ୍ତ' ମେରୁ ପାଖକୁ ଅଣା ଯାଉଥିଲା, ସେତେ-ବେଳେ ଚୁମ୍ବକ ଦ'ଣ୍ଡା ପରସ୍ପର ଆଡ଼କୁ ଟାଣି ହୋଇ ରହୁଥିଲେ ।

ତା' ପରେ ପରେ ଶିକ୍ଷିକା ଗୋଟେ ଛଡ଼ ଚୁମ୍ବକ ଦେଖେଇଲେ । ଟେବୁଲ ଉପରେ ଧଳା କାଗଜ ପନ୍ଦେ ପଡ଼ି-ଥିଲା । କାଗଜ ଉପରେ ଛଡ଼-ଚୁମ୍ବକଟି ପଡ଼ିଥିଲା । ମୁଠାଏ

ଲୁହାଗୁଣ୍ଡ ଆଣି ଶିକ୍ଷିକା ଚୁମ୍ବକର ଚାରିପଟେ ଏଣେ ତେଣେ ବିଞ୍ଚି ଦେଲେ । ଲୁହାଗୁଣ୍ଡଗୁଡ଼ିକ ଚୁମ୍ବକର ଦୁଇ ମେରୁ ସହିତ ସମ୍ପର୍କ ରଖି ସଜେଇ ହୋଇଗଲେ । ମିତା ଓ ତା'ର ବଡ଼ଭାଇ ରାଧୁ ଲୁହାଗୁଣ୍ଡଗୁଡ଼ିକର ଡିଜାଇନ୍ ଦେଖି କାବା ହେଇଗଲେ ।

ରାଧୁ କହିଲା, "ମାଡ଼ାମ୍, ଚୁମ୍ବକର ଆଉ କିଛି ଖେଳ ଦେଖେଇବେ ?"

ଶିକ୍ଷିକା ଗୋଟେ ଘୋଡ଼ାଖୁରା ଚୁମ୍ବକ ବାହାର କଲେ । ଗୋଟେ ପିନ୍--ପ୍ୟାକେଟରୁ ପିନ୍ ମେଞ୍ଚାଏ ବାହାର କରି ସେ ଟେବୁଲ ଉପରେ ଢାଳିଲେ । ପିନ୍‌ଗୁଡ଼ିକ ପାଖକୁ ସେ ଚୁମ୍ବକଟିକୁ ନେଲେ । ମେଞ୍ଚାଏ ପିନ୍ ଆସି ଚୁମ୍ବକରେ ଲାଗିଗଲେ, ଲାଗି କରି ଝୁଲିଲେ ।

ମିତା ଚୁମ୍ବକ ଖେଳ ଦେଖି ବହୁତ ଖୁସି ହୋଇଗଲା । ସେ ଦିନ ସେଇ ପ୍ରଦର୍ଶନୀରେ ସେ ଆହୁରି ଅନେକ କଥା ଦେଖିଲା । ପ୍ରଦର୍ଶନୀ ଛାଡ଼ି ଘରକୁ ଫେରିବାକୁ ତା'ର ମନ ହେଉ ନଥିଲା । କିନ୍ତୁ ଯେତେବେଳେ ଓଳିଏ-ବେଳ-ଖିଆ ଉଚ୍ଛନ୍ନ ହେଇଗଲା, ରାଧୁକୁ ଭୋକ ଲାଗିଲା । ଭାଇ ଭଉଣୀ ଦିହେଁ ଘରକୁ ଫେରିଲେ ।

ସେଦିନ ସଞ୍ଜବେଳେ ମିତା ମା' ପାଖରେ ବସି ଗପ କରୁଥିଲା । ହଠାତ୍ ତା'ର ଚୁମ୍ବକ କଥା ମନେ ପଡ଼ିଲା । ସେ ମା'ଙ୍କୁ ଅନେକ ପ୍ରଶ୍ନ ପଚାରିଲା । ମା ପ୍ରଥମେ ଚୁମ୍ବକର ମେରୁ କଥା ବୁଝେଇଲେ ।

ମିଛା ପଚାରିଲା: "ଅଚ୍ଛା, ମା, ଯଦି ମୁଁ ଯୁକ୍ତ ମେରୁକୁ ମିଶାଣ ମେରୁ ଏବଂ ବିଯୁକ୍ତ ମେରୁକୁ ଫେଡ଼ାଣ ମେରୁ ବୋଲି କହେ, ତେବେ ଠିକ୍ ହବ କି ନାହିଁ ?"

"ତୁ ଠିକ ଧରିଛୁ, ମା'ସେମିତି କହିଲେ ବି ହବ।" – ମା' ଉତ୍ତର ଦେଲେ।

"ଯୋଉ 'ମେରୁ' କଥା କହିଲୁ, ମୁଁ ତାକୁ କହିବି, ଚୁମ୍ବକର ଗୋଟେ କଡ଼ ମୁଣ୍ଡ, ଆଉ ଗୋଟେ କଡ଼ ଗୋଡ଼।" —ମିଛା ନିଜର ମୁଣ୍ଡ ଓ ଗୋଡ଼ ଆଡ଼କୁ ହାତ ଦେଖେଇ କହିଲା।

"ସେମିତି ବୁଝିଲେ ବି ହବ, ମିଛା।"—ମା' କହିଲେ। "ତେବେ, ମା' ମୋତେ ଆଶ୍ଚର୍ଯ୍ୟ ଲାଗୁଚି।"

"କେଉଁ କଥାରେ ଆଶ୍ଚର୍ଯ୍ୟ ହେଲୁ ?" – ମା' ପଚାରିଲେ। "ମଣିଷ ଯିନା କାହାକୁ ଭଲ ପାଏ, ଆଉ କାହାକୁ ଘୃଣା କରେ। ଚୁମ୍ବକ ସତେ କ'ଣ ସେୟା କରେ ? ଯୁକ୍ତ ମେରୁ ବିଯୁକ୍ତମେରୁକୁ ଭଲ ପାଏ; ଆଉ ସେଇ ଯୁକ୍ତ ମେରୁ ଅନ୍ୟ ଗୋଟେ ଯୁକ୍ତ ମେରୁକୁ ଘୃଣା କରେ । ଏ କଥା କେମିତି ସମ୍ଭବ ହେଲା, ମା' ?"

"କଥାଟା ଅବିକଳ ସେୟା ନୁହେଁ, ମିଛା। ତୁ ବଡ଼ ହେଲେ ଆଉ ଅଧିକ ଜାଣିବୁ। ତୁ ନିଜେ ତୋ ପ୍ରଶ୍ନର ଉତ୍ତର ପାଇଯିବୁ। ତେବେ ତୁ ଯୋଉ ପ୍ରକାରେ ବୁଝିଚୁ, ସେଟା ଭୁଲ୍ ନୁହେଁ।"

"ଚୁମ୍ବକର ଜୀବନ ଅଛି। ଲୁହା ଗୁଣ୍ଡର ଜୀବନ ଅଛି। ଲୁହା—ପିନ୍‌ର ଜୀବନ ଅଛି। ମୁଁ ପ୍ରଦର୍ଶନୀ ଦେଖି ଏୟା

ବୁଝିଲି । ଯାହା ବୁଝିଲି, ଠିକ୍ ବୁଝିଲି କି ନାହିଁ, କହ ତୁ, ମା ।"
—ମିତା ମା'ଙ୍କ ମୁହଁଆଡ଼କୁ ଚାହିଁ ଉତ୍ତର ଅପେକ୍ଷାରେ ରହି ପଚାରିଲା ।

"ତୁ ମୋତେ ଅଡୁଆରେ ପକେଇ ଦେଲୁ, ମିତା ।"—ମା ଘାବରେଇ ଯାଇ କହିଲେ ।

"ତୁ, ମା' ବହୁତ ପଢ଼ିଚୁ । କଲେଜରେ ବଡ ବଡ଼ ପିଲାଙ୍କୁ ପାଠ ପଢ଼ଉଚୁ ମୁଁ ବା କ'ଣ ପଚାରିଲି ଯେ ତୁ ଅଡୁଆରେ ପଡ଼ିଗଲୁ ?—

ମୁହରେ ଆଶ୍ଚର୍ଯ୍ୟ ପ୍ରକାଶ କରି ମିତା କହିଲା ।

ଚୁମ୍ବକ ଏବଂ ଲୁହାଗୁଣ୍ଡ ଜଡ ପଦାର୍ଥ । ଏଗୁଡ଼ାକୁ ମାରିଲେ ପିଟିଲେ ଉଁ ଚୁଁ କରିବେ ନାହିଁ । ଏମାନେ ନିର୍ଜୀବ । ଏମାନଙ୍କର ଜୀବନ ନାହିଁ ବୋଲି ମା କହିଲେ ।

ମିତା ଏ କଥା ଶୁଣି ମା'ଙ୍କ ସଙ୍ଗେ ବହୁତ ଯୁକ୍ତି କରିଥିଲା । ଜୀବନ୍ତ ପଦାର୍ଥ ଉଦ୍ଦୀପନ ପାଇଲେ ଅନୁକ୍ରିୟା ଦେଖେଇଥାଏ । ଅଜୀବନ୍ତ ପଦାର୍ଥ ଯେତେ ଉଦ୍ଦୀପନ ପାଇଲେ ସୁଦ୍ଧା ଅନୁକ୍ରିୟା ଦେଖାଏ ନାହିଁ । ଏଇ କଥାକୁ ତା ମା ତ କହିଥିଲେ । ସଜୀବ ଓ ନିର୍ଜୀବ ଭିତରେ ଏହା ଏକ ବଡ ପ୍ରଭେଦ । ମିତା ଏଇ କଥାକୁ ମା'ଙ୍କ ତୁଣ୍ଡରୁ ଶୁଣିଥିଲା । ସେ ଏହାକୁ ମାନି ନେଇଥିଲା । ବର୍ତ୍ତମାନ ବି ସେ ମାନୁଚି, କିନ୍ତୁ ମା' ଓହରୁଛନ୍ତି ।

ଦ'ଟା ଛୁଞ୍ଚି-ଚୁମ୍ବକକୁ ମିତା ଦେଖିଥିଲା । ଛଡ ଚୁମ୍ବକ ଓ ଲୁହାଗୁଣ୍ଡର କାମକୁ ସେ ଦେଖିଥିଲା । ଘୋଡାଖୁରା-ଚୁମ୍ବକ

ଲୁହା-ପିନ୍‌ଗୁଡ଼ାକୁ ଟାଣିନେଲା । ଏ କଥାକୁ ମଧ୍ୟ ସେ ଦେଖି-ଥିଲା । ଚୁମ୍ବକ, ଲୁହାଗୁଣ୍ଡ ଓ ପିନ୍‌କୁ ଜୀବନ୍ତ ବୋଲି କାହିଁକି କୁହା ନ ଯିବ ? ଉଦ୍ଦୀପନ ପାଇଲା ମାତ୍ରେ ସେମାନେ ତ ଅନୁ-କ୍ରିୟା ଦେଖେଇ ଥିଲେ । ତଥାପି ମା' ସେଗୁଡ଼ିକୁ ନିର୍ଜୀବ ବୋଲି କହିଦେଲେ । ମିତା ଏଇ କଥା ଉପରେ ବହୁତ ଭାବିଲା ।

ମା' କହିଲେ;—"ମିତା, ମୁଁ ଛୋଟେ ଜୀବନର କାହାଣୀ କହିବି, ପୂରା କାହାଣୀ ଶୁଣି ସାରିଲା ପରେ ତୁ ମୋଟାମୋଟି ଧରିନବୁ । କୋଉଟା ଜୀବନ୍ତ, ଆଉ କୋଉଟା ଅଜୀବନ୍ତ, ତା' ତୁ ନିଜେ ବାଛିନବୁ । ସବୁ ଦିନର ଚଳଣି ପାଇଁ ତୁ ଜୀବନକୁ ଚିହ୍ନିନବୁ । ମୋଟା ବିଚାର କଲେ ସବୁ ଠିକ୍ ହୋଇଯିବ ।

"ମା', ସରୁ ବିଚାର କଲେ ଠିକ୍ ହବ କି ନାହିଁ ?"—ମିତା ପଚାରିଲା ।

"ହବନାଇଁ, ମା' । ସରୁ ବିଚାରରେ ସଜୀବ ଓ ନିର୍ଜୀବ ଭିତରେ କେହି ଗାରଟାଏ ଟାଣି ପାରିବ ନାହିଁ ।"

"ତେବେ ସରୁ ବିଚାର କରିବା କି ନାହିଁ ?" –ମିତା ପଚାରିଲା ।

"ନିଶ୍ଚୟ କରିବା" - ମା' ମିତା ଉପରେ ବହୁତ ଖୁସି ହୋଇ କହିଲେ ।

# ସଜୀବ ଚଲାଚଲ କରେ

ମିତା ମା'ଙ୍କ ସାଙ୍ଗରେ ବସି ଟି.ଭି ଦେଖୁଥିଲା । ଟି.ଭିରେ ସେମାନେ ରାମାୟଣ ଦେଖୁଥିଲେ । ହନୁମାନ ଗୋଟେ ପର୍ବତକୁ ପିଠିରେ ଧରି ଉଡ଼ି ଯାଉଥିଲା ।

ମିତାର ମନରେ ଏକ ପ୍ରଶ୍ନ ଉଠିଲା । "ପର୍ବତଟା କାହିଁକି ଅଚଳ ରହିଲା ?"

ଦୁନିଆରେ ଅନେକ ଜିନିଷ ଅଚଳ, ଅନ୍ୟ ଜିନିଷ ଚଳ ବୋଲି ମା' କହିଲେ । ବହି, କଲମ, ଚୌକି, ଟେବୁଲ୍, ମାଟି,




ନିର୍ଜୀବ ବଂଶବୃଦ୍ଧି କରିପାରେ ନାହିଁ

ପଥର ଇତ୍ୟାଦି ଅନେକ ଜିନିଷ ଯେଉଁଠି ପଡ଼ିଥାଏ, ସେଇଠି

ପଡ଼ୁଥାଏ । ଯେଉଁ ପଦାର୍ଥର ଚାଲିବାର ଶକ୍ତି ନ ଥାଏ, ତାହା ଅଚଳ । ଯାହାର ଚାଲିବାର ଶକ୍ତି ଥାଏ, ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଯିବାର ଶକ୍ତି ଥାଏ, ତାହା ଚଳ । ମଣିଷ ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଚାଲି ଯାଇପାରେ । ମଇଁଷି, ଗାଈ, ଛେଳି, ମେଣ୍ଢା, କୁକୁର, ବିଲେଇ ପରି ପଶୁମାନେ ଚାଲିବୁଲି କରି ପାରନ୍ତି । ବାଇ ଚଢ଼େଇ, ଘରଚଟିଆ, ଶୁଆ,





ପର୍ବତ, ପଥର ଅଚଳ





ହରିଣ, ବାଘ, ମଣିଷ ସଚଳ

ସାରୀ, ମୟୂର, କୁଆ, କାବତ, ଶାଗୁଣା ପରି ପକ୍ଷୀମାନେ ଉଡ଼ି ପାରନ୍ତି । ସାପ, ଏଣ୍ଡୁଅ, ଝିଟିପିଟି, ଚମ୍ପେଇନେଉଳ ପରି ପ୍ରାଣୀମାନେ ରଙ୍ଗି ରଙ୍ଗି ଯାଆନ୍ତି । ମାଛ, କଇଁଛ, କୁମ୍ଭୀର ପରି ଜଳଜୀବମାନେ ପାଣିରେ ପହଁରନ୍ତି । ଏଇପରି ଅନେକ ଉଦା-

ହରଣ ଦେଇ ମା' ମିତାକୁ ଚଳ-ଅଚଳ କଥା ବୁଝେଇ ଦେଲେ ।

"ତୋର ଜୀବ-ଅଜୀବ ପ୍ରଶ୍ନର ଉତ୍ତର ଏଠି ଆସୁଛି, ମିତା ।"—ମା' କହିଲେ ।

"ହଁ, ସେ ବିଷୟରେ କିଛି କହିବୁ, ମା'' । —ମିତା ଆଗ୍ରହର ସହିତ କହିଲା ।

ମା' ବୁଝେଇବାକୁ ଲାଗିଲେ । ଯାହାର ଜୀବ ଅଛି, ସେ ଗୋଟେ ଜାଗାରୁ ଆଉ ଗୋଟେ ଜାଗାକୁ ଯାଇପାରେ । ଯାହାର ଜୀବ ନାହିଁ, ସେଟା ଅଚଳ ହୋଇ ପଡ଼ି ରହିଥାଏ । ଅଚଳକୁ ଅନ୍ୟ କେହି ବୋହି ନେଲେ ତାହା ଜାଗା ବଦଳାଇ ପାରିବ । ସଜୀବ ଓ ନିର୍ଜୀବ ଭିତରେ ଏଟା ଗୋଟେ ବଡ଼ ଲକ୍ଷଣ । ସଜୀବ ଗତି କରିପାରେ; ଏକ ଜାଗାରୁ ଅନ୍ୟ ଜାଗାକୁ ଯାଇ ପାରେ । ନିର୍ଜୀବ ଗତିକରି ପାରେ ନାହିଁ; ଯେଉଁଠି ଥାଏ, ସେଇଠି ପଡ଼ି ରହିଥାଏ । ଜାଗା ବଦଳେଇବାକୁ ହେଲେ ନିର୍ଜୀବକୁ କେହି ବୋହି କରି ନିଏ ।

## ନନ୍ଦନ-କାନନରେ ରେଳଗାଡ଼ି

ମା' ଓ ବାପାଙ୍କ ସାଙ୍ଗରେ ମିତା ନନ୍ଦନକାନନ ଯାଇଥିଲା । ସେଠାରେ ସେ ଚିଡ଼ିଆଖାନା ବୁଲି ଦେଖିଲା । ବାଘ, ଭାଲୁ, ହାତୀ, ସିଂହ, ହରିଣ, ସମ୍ବର, ଗଣ୍ଡା, ବଣମଣିଷ, ମୟୂର, ଓଟପକ୍ଷୀ, ସାପ, କୁମ୍ଭୀର, ଓଧ ଇତ୍ୟାଦିକୁ ଦେଖିସାରି ସେ

ଟିକିଏ ଥକା ମାରିଲା । ତା' ପରେ ସେ ପିଲାଙ୍କ ରେଳଗାଡ଼ି ଦେଖିବାକୁ ଗଲା । ମା' ଓ ବାପାଙ୍କ ସାଙ୍ଗେ ସେ ରେଳଗାଡ଼ି ଚଢ଼ିଲା । ତା' ପରେ ସେ ହ୍ରଦ ଆଡ଼କୁ ଗଲା । ବାପା ମା'ଙ୍କ ସହିତ ମୋଟର ଲଞ୍ଚରେ ବସି ସେ ହ୍ରଦର ଏ କୂଳରୁ ସେ କୂଳକୁ ଗଲା ଏବଂ ଫେରିଆସିଲା ।

ସେମାନେ ସମସ୍ତେ ଗଛମୂଳେ ଛାଇରେ ବସିଲେ । ମା' ଘରୁ ଖାଇବା ଜିନିଷ ନେଇଥିଲେ । ମା', ବାପା, ରାଧୁ ଓ ମିତା ଖାଇନେଲେ, ପାଣି ପିଇଲେ । ସବୁଜ-ଘାସ-ପଡ଼ିଆ ଉପରେ ଗଛ-ଛାଇରେ ମିତା ଗଡ଼ୁଥିଲା ।

କିନ୍ତୁ ତା' ମନ ଭିତରେ ଗୋଟିଏ ପ୍ରଶ୍ନ ଉଠୁଥିଲା । ସେ ତା'ର ଉତ୍ତର ପାଇପାରୁ ନ ଥିଲା ।

"ରେଲ୍ ଗାଡ଼ିଟାକୁ ଆମେ ସଜୀବ ନା ନିର୍ଜୀବ କହିବା ?"

"ଡଙ୍ଗାଟାକୁ ଆମେ ସଜୀବ ନା ନିର୍ଜୀବ କହିବା ?"

"ଉଡ଼ାଜାହାଜକୁ ଆମେ ସଜୀବ ନା ନିର୍ଜୀବ କହିବା ?"

ମିତାର ପ୍ରଶ୍ନଗୁଡ଼ିକୁ ମା'ଶୁଣିଲେ । ମିତା ଏତେ କଥା ଭାବି ପାରୁଛି ଜାଣି ମା' ଖୁସି ହେଲେ । ସେ କହିଲେ; "ମିତା, ରେଲଗାଡ଼ି ନିର୍ଜୀବ । ନାଆ, ଉଡ଼ାଜାହାଜ, ମଟରଗାଡ଼ି ନିର୍ଜୀବ । ରକେଟ ନିର୍ଜୀବ ।"

"ଏମିତି କଥାକୁ ମୁଁ ଭଲପାଏ ନାହିଁ, ମା"—ମିତା ରୋଷ ମନରେ କହିଲା ।

"ତୁ ଯୋଉ କଥାକୁ ଭଲ ପାଉ ନାହୁଁ, ତାକୁ ମୁଁ ଜାଣି ପାରିଲିଣି, ମିତା । ସେଇଥି ପାଇଁ ତ ମୁଁ ଖୁସି ।"—ହସ ହସ ମୁହଁରେ ମା' କହିଲେ ।

"ଗୋଟେ କଥା ମୋତେ ଜେଜେମା କହିଥିଲି । କଥା-ଟାକୁ ମୋତେ ସେ ବୁଝେଇ ଦେଇଥିଲି ।" ମୁଣ୍ଡ ଟୁଙ୍ଗାରି ମିତା କହିଲି ।

" କେଉଁ କଥାକୁ ତୋତେ ଜେଜେମା କହିଥିଲେ ?"

"ବ୍ରହ୍ମା ବଳବଳେଇଗଲେ ବେଦ । ବ୍ରହ୍ମା ପରା ନିଗୋଡ଼ ନିଦରେ ଶୋଇ ପଡ଼ିଥିଲେ । ସେ ଘୁଙ୍ଗୁଡ଼ି ମାରୁଥିଲେ । ଉପର-ମୁହାଁ ହୋଇ ଚିତ୍ ହୋଇ ପଡ଼ିଥିଲେ । ସେଇ ଶୋଇବା ଭିତରେ ସେ କ'ଣ ଗୋଟେ ସପନ ଦେଖିଲେ । ସେଇ ସପନ ଭିତରେ ସେ ବଳବଳେଇ ହେଲେ । ବଳିବଳେଇ ହେଲାବେଳେ ତାଙ୍କ ତୁଣ୍ଡରୁ ଯାହା ବାହାରିଲା, ତାହା ପରି ବେଦ ହୋଇଗଲି । ବେଦରେ ଯାହା ଅଛି, ତାହା ସବୁ ନିରାଟ ସତ୍ୟ । ତାକୁ ସତ ବୋଲି ସମସ୍ତେ ମାନିବାକୁ ବାଧ୍ୟ । କେହି ପ୍ରଶ୍ନ କରି ପାରିବେ ନାହିଁ । କେହି ଯୁକ୍ତି କରି ପାରିବେ ନାହିଁ । ଏମିତି ମତକୁ ମୁଁ ଭଲ ପାଏ ନାହିଁ ।" ବିରକ୍ତ ହୋଇ ମିତା କହିଲି ।

କଥାଟା ଅବିକଳ ସେମିତି ନୁହେଁ ବୋଲି ମା' ବୁଝେଇ ଦେଲେ । ବେଦକୁ ଯେ କେହି ପ୍ରଶ୍ନ କରି ପାରିବ । ଯୁକ୍ତି କରିବାକୁ ମନା ନାହିଁ । ବିନା ଯୁକ୍ତିରେ ମାନି ନେଲେ ଅଧର୍ମ ହୁଏ ।

"ତେବେ, ମା' ତୋ କଥାଟା କେମିତି ବେଦର ଗାର ହବ ?"—ମିତା ପଚାରିଲି ।

"ନା ନା, ମୋ କଥାଟାକୁ ବି ତୁ କାଟିଦେଇ ପାରିବୁ ।"—ମା' କହିଲେ ।

"ମାଛଟା ସଜୀବ; ଡଙ୍ଗାଟା ନର୍ଜୀବ । କେମିତି ହେଲା କହ ।"

"କୁଆଟା ସଜୀବ; ଉଡ଼ାଜାହାଜଟା ନର୍ଜୀବ; କେମିତି ହେଲା କହ ।

"ମୁଁ ସଜୀବ ହେଲି; ରେଲଗାଡ଼ିଟା ନର୍ଜୀବ ହେଲା; ଏ କଥା କେମିତି ସମ୍ଭବ ହେଲା, କହ ।"

ମିତାକୁ ମା' ବୁଝେଇ ଦେଲେ । ମାଛ ନିଜେ ପହଁରୁଛି । ଡଙ୍ଗାକୁ ନାଉରି କାତ ଓ ଆହୁଲା ଦ୍ୱାରା ଚଳଉଛି । ନାଉରିର ଦେହରୁ ଶକ୍ତି ଖର୍ଚ୍ଚ ହଉଛି । ଡଙ୍ଗା ଚାଲିଲେ ସୁଦ୍ଧା ଡଙ୍ଗା ନିଜର ଶକ୍ତି ଖର୍ଚ୍ଚ କରୁନାହିଁ ।



ସଜୀବ ମାଛ ପାଣିରେ ପହଁରେ
ନିର୍ଜୀବ ଜାହାଜ ମଧ୍ୟ ଗତିଶୀଳ

ମଟର ଲଞ୍ଚ ପାଣି ଉପରେ ଚାଲୁଛି । ଲଞ୍ଚରେ ମଟରଟେ ଲାଗିଛି । ମଟର ଡିଜେଲ-ତେଲ ଖାଏ । ଡିଜେଲ ମଟର ଭିତରେ

ଗୋଟେ ପ୍ରକାରେ ଜଳେ । ସେଥିରୁ ଶକ୍ତି ବାହାରେ । ସେଇ ଶକ୍ତି ଲଣ୍ଠକୁ ଠେଲି ଠେଲି ନିଏ । ବିନା ଡିଜେଲ ଓ ମଟରରେ ଲଣ୍ଠ ଚାଲି ପାରିବ ନାହିଁ ।

କୁଆ, କାବତ, କୁକୁଡ଼ା, ମୟୂର; ହଳଦୀବସନ୍ତ, କୋଇଲି ଓ ବାଇ ଚଢ଼େଇ ଉଡ଼ି ପାରନ୍ତି । ପକ୍ଷୀ ନିଜର ଶରୀରରୁ ଶକ୍ତି ବ୍ୟବହାର କରି ଉଡ଼େ । ଉଡ଼ାଜାହାଜର ଇଞ୍ଜିନ୍ ଅଛି । ସେଇ ଇଞ୍ଜିନ୍ ପେଟ୍ରୋଲରୁ ଶକ୍ତି ପାଇ ଉଡ଼ାଜାହାଜକୁ



ସଜୀବ ପକ୍ଷୀ ଆକାଶରେ ଉଡ଼ିପାରେ
ନିର୍ଜୀବ ଉଡ଼ାଜାହାଜ ମଧ୍ୟ ଉଡ଼ିପାରେ

ଉଡ଼େଇ ନିଏ । ଉଡ଼ାଜାହାଜରେ ଚାଳକ ଥାଆନ୍ତି । ତାଙ୍କୁ ଲୋକେ 'ପାଇଲଟ୍' କହନ୍ତି । ପାଇଲଟ୍ ଉଡ଼ାଜାହାଜକୁ ଚଳାନ୍ତି । ସେ ଯେଉଁ ଦିଗକୁ ନିଅନ୍ତି, ଉଡ଼ାଜାହାଜ ସେଇ ଦିଗକୁ ଉଡ଼େ । ସେ ଯେତେ ବେଗରେ ଉଡ଼ାନ୍ତି, ଉଡ଼ାଜାହାଜ ସେତେ ବେଗରେ ଉଡ଼େ । ଉଡ଼ାଜାହାଜ ବିନା ପାଇଲଟ୍‌ରେ, ବିନା ପେଟ୍ରୋଲ୍‌ରେ ଉଡ଼ିପାରେ ନାହିଁ ।

ମଣିଷ ଗୋଟେ ଜାଗାରୁ ଆଉ ଗୋଟେ ଜାଗାକୁ ଚାଲି-ଯାଏ । ସେ ଦୌଡ଼ି ପାରେ, ଚାଲି ପାରେ । ଦୌଡ଼ିବାରେ ସେ ଶକ୍ତି ଦରକାର କରେ । ସେ ତା'ର ଶରୀରରୁ ଶକ୍ତି ପାଏ । ସେ ଭାତ, ରୋଟି, ମାଛ, ମାଂସ, ଦୁଧ, ଅଣ୍ଡା, ପନିପରିବାର ତରକାରୀ ଖାଏ । ତା'ର ଦେହ ଖାଦ୍ୟରୁ ଶକ୍ତି ପାଏ ।

ରେଲଗାଡ଼ିରେ ଗୋଟେ ଇଞ୍ଜିନ୍ ଅଛି । ସେଇ ଇଞ୍ଜିନ୍ କୋଇଲା ଖାଏ ବା ଡିଜେଲ୍ ପିଏ । ବିଜୁଳି ବ୍ୟବହାର କରି ମଧ୍ୟ ଗାଡ଼ି ଚାଲେ । ରେଲଗାଡ଼ି ଚାଲିବାରେ ଶକ୍ତି ଲାଗେ ।



ସଜୀବ ମନୁଷ୍ୟ ଦୌଡ଼ିପାରେ
ନିର୍ଜୀବ ରେଲଗାଡ଼ି ମଧ୍ୟ ଗତିଶୀଳ

ସେହି ଶକ୍ତି କୋଇଲାରୁ ଆସେ, ଡିଜେଲରୁ ଆସେ, ଅଥବା ବିଜୁଳିରୁ ଆସେ । ରେଲଗାଡ଼ି ଚଳେଇବାକୁ ଜଣେ ଡ୍ରାଇଭର୍

ଥାଆନ୍ତି । ସେ ଚାହିଁଲେ ରେଲଗାଡ଼ି ଚାଲେ । ସେ ଚାହିଁଲେ ରେଲଗାଡ଼ି ବନ୍ଦ ହୁଏ । ରେଲଗାଡ଼ି ନିଜ ଇଚ୍ଛାରେ ଚାଲେ-ନାହିଁ । ରେଲଗାଡ଼ି ନିଜ ଶକ୍ତିରେ ଚାଲେନାହିଁ ।

ମିତା ବର୍ତ୍ତମାନ କଥାଟାକୁ ବୁଝିନେଲା । ସଜୀବର ଗତି ଥାଏ; ସେ ଚଳ । ନିର୍ଜୀବର ଗତି ନ ଥାଏ; ସେ ଅଚଳ । ଜୀବ ନଥିବା ଜିନିଷଟା ମଧ୍ୟ ଗତି କରିପାରେ । ମାତ୍ର ତାକୁ ଚଳେଇବାକୁ କେହି ଚାଳକ ଥାଇ ପାରନ୍ତି । ଚାଲିବା ପାଇଁ ତାହା ବାହାର ଜିନିଷରୁ ଶକ୍ତି ଦରକାର କରେ । ଏତିକ କଥା ବୁଝି ସାରିଲା ପରେ ବି ମିତା ଗୋଟିଏ ପ୍ରଶ୍ନ ପଚାରିଲା; "ମା' ମୁଁ କ'ଣ ଧରିନେବି ଯେ ନିର୍ଜୀବ ପଦାର୍ଥ ପୂରା ଅଚଳ, ନିଶ୍ଚଳ ?"

ମା' ଟିକିଏ ଘବଡ଼େଇ ଗଲେ । ସେ ଡବଡବ ହୋଇ ଚାହିଁଲେ ।

ମା' ବେଶୀ ପାଠ ପଢ଼ିଛନ୍ତି । ସେ ଅଧିକ କଥା ଜାଣିଛନ୍ତି । ତାଙ୍କ ଜାଣିବାରେ ଜଗତର ପ୍ରତି ଜିନିଷ ପରା ଚଳ; କୌଣସି ଜିନିଷ ନିଶ୍ଚଳ ନୁହେଁ ।

ମିତା କହିଲା; "ମା', ଏଇଠେ ତୁ ବୋକୀ ହୋଇଗଲୁ କିଆଁ ? ଏତେ ପାଠ ପଢ଼ି କରି ବି ତୁ ଫେଲ୍ ହୋଇଗଲୁ !"

"ମିତା, ତୁ ବୁଦ୍ଧିମତୀ !"—ମା' ଖୁସିମନରେ କହିଲେ ।

"ମୁଁ ତୋ ଝିଅ ବୋଲି ତୁ ମୋତେ ପ୍ରଶଂସା କଲୁ । ମୋ ପ୍ରଶ୍ନର ଉତ୍ତର ଦେଲୁ ନାହିଁ କିଆଁ ?"

"ସବୁ ବସ୍ତୁରେ ଜଗତର ପ୍ରତ୍ୟେକ ଜିନିଷଟା ଚଳ, ସବୁ-ବେଳେ ଚଳ । ନିଶ୍ଚଳ ବୋଲି କିଛି ଜିନିଷ ନାହିଁ । ମୋଟା ବସ୍ତୁରେ ସଜୀବ ଚଳ ନିର୍ଜୀବ ଅଚଳ । ତୁ ବଡ଼ ହବୁ ଝିଅ । ସେତେବେଳେ ଅଧିକ ପଢ଼ିବୁ । ଗଛର ଡାଳକୁ ଯିବୁ; ଡାଳରୁ ପତ୍ରକୁ ଯିବୁ । ବଡ଼ ହୋଇ ଅଧିକ ପଢ଼ି ସବୁ ବସ୍ତୁର କରିବୁ । ତୁ ତୋ ପ୍ରଶ୍ନର ଉତ୍ତର ନିଜେ ପାଇଯିବୁ ।" ମା' ଏକଥା କହିଲାବେଳେ ବହୁତ କିଛି ଭାବିଲା ପରି ଜଣା ପଡ଼ୁଥିଲେ ।

## ଗାଈ ବାଛୁରୀଟିଏ ଜନ୍ମକଲା

ମିତା ତାଙ୍କ ଗୁହାଳକୁ ଗଲା । ସେଦିନ ସକାଳେ ତାଙ୍କ ଗାଈ ବାଛୁରୀଟିଏ ଜନ୍ମ କରିଥିଲା । ନୂଆ ଜନ୍ମ ହୋଇଥିବା ମାଈ ବାଛୁରୀଟି ତା' ମା'ଠୁ କ୍ଷୀର ପିଉଥିଲା ।

ମିତା ବାଛୁରୀଟିକୁ ଦେଖି ବହୁତ ଖୁସି ହୋଇଗଲା । ସେ ଯାଇ ତାକୁ ଆଉଁଷିଲା, ତାକୁ ଆପୁଡ଼େଇଲା. ତା' ସାଙ୍ଗରେ ଖେଳ ହେଲା ।

ମିତାର ବାପା ଗୁହାଳକୁ ଆସିଲେ । ସେ ଗାଈକୁ, ବାଛୁରୀକୁ ଦେଖିଲେ । ସେ ଗାଈର ଖାଇବା, ପିଇବା କଥା ବୁଝିଲେ । ସେ ମିତାକୁ ସାଙ୍ଗରେ ନେଇ ଘରକୁ ଫେରିଲେ ।

ମିତା ବାପାଙ୍କୁ ପଚାରିଲା, "ବାପା, ଏଇ ବାଛୁରୀଟି କ'ଣ ସବୁବେଳେ ବାଛୁରୀ ହୋଇ ରହିବ ?"

"ନା, ମା' ବାଛୁରୀ ବଡ ହେବ । ଦିନେ ସେ ଗାଈ ହେବ । ସେ ଛୁଆ ଜନ୍ମ କରିବ ।"





## ସଜୀବ ବଂଶବୃଦ୍ଧି କରିପାରେ

ମିତା ବାପାଙ୍କ କଥା ଶୁଣିଲା । ସେ ତୁନି ହେଲା । କିନ୍ତୁ ମୁନି ପରି ସେ ଅନେକ କଥା ଭାବି ନେଲା ।

ସେଦିନ ସଞ୍ଜବେଳେ ସେ ମା'ଙ୍କ ପାଖରେ ବସିଥିଲା । ମା' ହାତରେ ବହି ଖଣ୍ଡିଏ ଧରିଥିଲେ ।

ମିତା ପଚାରିଲା, "ମା', ଛୋ ବହି କେବେ ଜନ୍ମ କରିବ ?

"ଧେତ୍, ଏମିତି ପ୍ରଶ୍ନ କ'ଣ ପଚାରନ୍ତି ?" —ମା' ବିରକ୍ତ ହୋଇ କହିଲେ ।

"କେମିତି ପ୍ରଶ୍ନ ପଚାରନ୍ତି, ତା' କୋଉଠେ ଲେଖା ହେଇଛି, ମା' ?"—ମିତା ଧୀରସ୍ଥିର ହୋଇ ପୁଣି ପଚାରିଲା ।

ମା' ଟିକିଏ ଚମକି ପଡ଼ିଲେ । ସେ କହିଲେ; "ହଁ, ମିତା, ତୁ ଯାହା ଚାହିଁବୁ, ପଚାରି ପାରିବୁ ।"

"ମୋ ବହି କେବେ ଜନ୍ମ କରିବ ନାହିଁ । ମୋ ଚୌକି, ଟେବୁଲ, ମୋ' ଜାମା, କୋତା କେବେ ଜନ୍ମ କରିବ ନାହିଁ । ଆମ ଗାଈ ଜନ୍ମ କଲା । କୁନି ବାଛୁରୀଟିଏ ଜନ୍ମ କଲା । ମୋ ଫ୍ରକ୍ ତ କୁନି ଫ୍ରକ୍‌ଟିକୁ ଜନ୍ମ କରି ପାରନ୍ତା । ଏ କଥା ନ ହଉଛି କିଆଁ ? ମୋ'ର ଏଇ ପ୍ରଶ୍ନଟା କ'ଣ ଭଲ ପ୍ରଶ୍ନ ନୁହେଁ ?"—ମିତା ନିଜ ମନରେ ବହୁତ ବଳ ରଖି ପଚାରିଲା ।

"ଭଲ ପ୍ରଶ୍ନଟିଏ ପଚାରିଲୁ, ଝିଅ ।"—ମା' ମିତାର ପିଠିରେ ହାତ ରଖି କହିଲେ ।

ମା' ମିତାର ପ୍ରଶ୍ନର ଉତ୍ତର ଦେଲେ । ସଜୀବ ନିଜର ବଂଶ ବଢ଼ାଏ । ଗାଈରୁ ଗାଈ ଜନ୍ମ ହୁଏ । କୁକୁର କୁକୁରକୁ ଜନ୍ମ କରେ । ମଣିଷରୁ ମଣିଷ ଜାତ ହୁଏ । ବାଇଗଣ-ମଞ୍ଜି ରୋଇଲେ ବାଇଗଣ ଗଛ ହୁଏ । କଖାରୁ-ମଞ୍ଜି ରୋଇଲେ କଖାରୁ ଗଛ ମିଳେ । ଯାହାର ଜୀବ ଅଛି, ସେ ତା'ପରି ଅନ୍ୟ ଜୀବକୁ ଜନମ ଦିଏ ।

କିନ୍ତୁ ନିର୍ଜୀବ ଏଇ କଥା କରିପାରେ ନାହିଁ । ପଥରରୁ ପଥର ଜାତ ହୁଏ ନାହିଁ । ଗୋଟେ ଟେବୁଲ୍‌ରୁ ଆଉ ଗୋଟେ ଟେବୁଲ୍ ଜନମ ପାଏ ନାହିଁ ।

ମିତା ତା' ଓଠରେ ବାଁ ହାତ ବୁଢ଼ା ଆଙ୍ଗୁଠିକୁ ଗେଞ୍ଜି ଥିଲା । ସେ ମୁଣ୍ଡ ହଲେଇ ପଚାରିଲା "ମା' ଜୀବ ଜନ୍ମଷଷ୍ଠା କ'ଣ ଜନମ କରୁଚ ? ମଣିଷରେ, ଗାଛରେ, କୁକୁରରେ, ବାଇ-ଗଣରେ ଓ କାକୁଡ଼ିରେ କୋଉ ଜନଷଷ୍ଠା ଜନମ କରୁଚ ?"

ଭଲ କଥାଟିଏ ପଚାରିଲୁ, ମିତା । କିନ୍ତୁ ଏତ ସରୁ ବଚାର ହେଇଗଲା । ଏଇ କଥାକୁ ମନେରଖିଥା' । ଯେତେବେଳେ ବଡ଼ ହବୁ , ବହୁତ ପାଠ ପଢ଼ିବୁ , ସେତେଲେ ଯ୍ୟା'ର ଉତ୍ତର ପାଇଯିବୁ ।"

"ସେତେବେଳେ ସରୁ ଉତ୍ତର ପାଇବ । ଆଜ ମୋତା ଉତ୍ତରଟେ ଦେ । ମୁଁ କ'ଣ ଏତେ ବୋକୀ ? କିଛୁ ବୁଝି ପାରବ ନାହିଁ ?" ମିତା ଏପରି କହି ମା'ଙ୍କଠାରୁ ଉତ୍ତର ଦାବୀ କଲା ।

ମିତା ବୋକୀ ନୁହେଁ ବୋଲି ମା' ଜୋର ଦେଇ କହିଲେ । ଅତ ଚତୁର ନ ହୋଇ ଥିଲେ ସେ ଏମିତ ପ୍ରଶ ପଚାରି ପାରନ୍ତା ନାହିଁ ।

ମା' ଏଇଠି ଗୋଟିଏ କଥା କହିଲେ । ଭିଡ଼ କଥାଟିଏ କହିଲେ । ଏଇନେ ମନେ ରଖିବାକୁ ହବ । ବଡ଼ ହେଲେ ତା' ବିଷୟରେ ମିତା ଅଧିକ ପଢ଼ିବ , ଅଧିକ ଜାଣିବ । ସେଇ ଜିନଷଟି ହେଲା—ଡ଼.ଏନ୍.ଏ । ପ୍ରତ ଜୀବର କୋଷରେ ଏଇ ଜନଷଟି ଅଛୁ । ଏଇ ଜନଷଟି ଯ୍ୟା' ପରି ଆଉ ଜନଷକୁ ଗଢ଼ି ଦିଏ । ଫଳରେ ବଂଶ ବଢ଼େଇବା ସମ୍ଭବ ହୁଏ ।

"ତୁ ଠିକ୍ କହି ପାରିଲୁ ନାହିଁ, ମା" । ମିତା ହସି ହସି କହିଲା ।

"କୋଉଠେ ଭୁଲ୍ ହେଲା ?"—ମା' ଆଶ୍ଚର୍ଯ୍ୟ ହୋଇ ପଚ୍ଚରିଲେ ।

"ମଣିଷ ପାଣି ପିଏ; ଗାଈ ପାଣି ପିଏ; କୁକୁର ପାଣି ପିଏ ତୁଳସୀ ଗଛ ମୂଳରେ କେତେମା ପାଣି ଢାଏ । ଆମେ ସମସ୍ତେ ସେଇ ଏକା ପାଣି ପିଉଚେ । ଯଦ ମଣିଷଠାରେ, ଗାଈଠାରେ




ଡି.ଏନ.ଏ          ଆର୍.ଏନ.ଏ

ଓ କୋବ ଗଛରେ ସେଇ ଏକା ଡ଼ି. ଏନ୍. ଏ. ଅଛି, ତେବେ କଥାଟା ତ ବଗିଡ଼ ଯିବ । ମା' କଅାଁ ପୁଅଝିଅ ଜନମ କରିବ ? ଗାଈ କଅାଁ ବାଛୁରୀ ଜନ୍ମ କରିବ ? କୋବ ମଞ୍ଜିରୁ କଅାଁ କୋବ ଗଛ ହବ ?"—ମା'ଙ୍କୁ ଏଇଠି ଅକଡ଼ଆରେ ପକେଇ ଦେଲି ବୋଲି ମିଛା ଭାବ ନେଲି ।

ମା' ବୁଝେଇ ଦେଲେ । ଅନେକ କିସମର ଜୀବନ୍ତ ଜିନିଷ ଅଛି । ପ୍ରତି କିସମର ଡ଼ି.ଏନ୍.ଏ ଅନ୍ୟ କିସମର ଡି.ଏନ୍.ଏ. ଠାରୁ ଗୁଣରେ ନିଆରା, ସଂଖ୍ୟାରେ ନିଆରା । ସେଥି ସକାଶେ ଆମେ ଅନେକ ପ୍ରକାରର ଜୀବଜନ୍ତୁ ଓ ଗଛବୁରୁଛ ଦେଖୁ ।















"ଆଛା, ମା, ଡି.ଏନ୍.ଏ ନ ଥାଇ ସଜୀବ ପଦାର୍ଥ ନାହିଁ ?" – ମିତା ପଚାରିଲା ।

"ମୁଁ ସେଇଟାକୁ ନ କହିବାକୁ ଇଚ୍ଛା କରିଥିଲି ।"—ମା' ମୁରୁକି ହସା ଦେଇ କହିଲେ ।

"କ'ଣ ତୁ ମୋ'ଠାରୁ ଗୁପ୍ତ ରଖିଥିଲୁ ?"

"ସେମିତି ନୁହେଁ, ମିତା । ତୋ ବୟସପାଇଁ ଭିଡ଼ ହେଇଯାଉଛି ବୋଲି ଜୀବକୋଷ ଓ ଡି.ଏନ.ଏ. କହୁ ନ ଥିଲି ।"

ମା' ଆର୍. ଏନ୍. ଏ. କଥା କହିଲେ । ବସନ୍ତ, ମିଳିମିଳା, ହାଉଫଟି, ଆଖିଧରା ଇତ୍ୟାଦି ରୋଗକୁ ଭାଇରସ୍ ବା ଭୂତାଣୁ କରେଇ ଥାଆନ୍ତି । କେତେଗୁଡ଼ିଏ ଭୂତାଣୁରେ ଡ଼ି.ଏନ୍.ଏ ଥାଏ । ଆର୍. ଏନ୍. ଏ ଥାଏ । ଆର୍. ଏନ୍ ଏ ଦ୍ୱାରା ମଧ୍ୟ କେତେକ ଭୂତାଣୁ ନିଜର ବଂଶ ବଢ଼େଇ ଥାଆନ୍ତି ।

ମିତା ଦୌଡ଼ି ଯାଇ ଖାତା ଖଣ୍ଡିଏ ଓ କଲମଟିଏ ଆଣିଲା । ତା' ଖାତାରେ ସେ ଦୁଇଟି ଶବ୍ଦକୁ ଲେଖିନେଲା । ସେଇ ଶବ୍ଦ ଦୁଇଟି ଥିଲା—ଡି. ଏନ୍ ଏ, ଆର୍. ଏନ୍ ଏ ।

## ଘରର କୋଠରୀ ଓ ଇଟା

ମା'ଙ୍କଠାରୁ ମିତା 'କୋଷ' ଶବ୍ଦଟିକୁ ଶୁଣିଥିଲା । ତାହା କ'ଣ ବୋଲି ସେ ମା'ଙ୍କୁ ପଚାରିଲା ।

ପାଖରେ ଗୋଟିଏ ଘର ତିଆରି ହେଉଥିଲା । ମା' ମିତାକୁ ନେଇ ସେଇ ଘର ପାଖରେ ପହଞ୍ଚିଲେ । ଖଣ୍ଡିଏ ଖଣ୍ଡିଏ ଇଟାକୁ ଯୋଡ଼ି ରାଜମିସ୍ତ୍ରୀ ଘର ତିଆରି କରୁଥିଲା । ଘରେ କେତୋଟି କୋଠରୀ ଥିଲା ।

ମଣିଷ, ପଶୁ ଓ ଗଛର ଶରୀର ଅନେକ କୋଷରେ ତିଆରି । ଦେହକୁ ଘର ସହିତ ତୁଳନା କଲେ କୋଷକୁ ଇଟା ବୋଲି କୁହାଯାଇ ପାରିବ । ଆକାରରେ କୋଷ ଅତି ଛୋଟ । ଆମେ ଖାଲି ଆଖିରେ କୋଷକୁ ଦେଖି ପାରିବା ନାହିଁ । ଅଣୁବୀକ୍ଷଣ ସାହାଯ୍ୟରେ କୋଷକୁ ଦେଖି ହବ ।

ସଜୀବର ଶରୀର କୋଷରେ ତିଆରି । ନିର୍ଜୀବଠାରେ ଏପରି କୋଷ ନ ଥାଏ ।

ମଣିଷର ଦେହରେ କୋଟି କୋଟି କୋଷ ଥାଏ । ଗୋଟେ ବରଗଛ କିମ୍ବା ନଡ଼ିଆଗଛ ବହୁ-କୋଟି କୋଷରେ ତିଆରି । ମାତ୍ର ଗୋଟିଏ ଜୀବାଣୁ କେବଳ ଗୋଟିଏ କୋଷରେ ତିଆରି । ଏକ-କୋଷୀ ଜୀବଙ୍କ ସଂଖ୍ୟା ବହୁତ ବଡ଼ ।

ଆମର ଦେହରେ ଅନେକ ଅଙ୍ଗ ଅଛି । ଏକ ଅଙ୍ଗ ଅନ୍ୟଠାରୁ ନିଆରା । ଆମ ଦେହ ଭିତରେ ହୃତ୍‌ପିଣ୍ଡ, ଫୁସଫୁସ୍, ପାକସ୍ଥଳୀ, ଅନ୍ତ୍ର, କଲିଜା, ମସ୍ତିଷ୍କ, ପରି ଅନେକ ଅଙ୍ଗ ଅଛି । ପ୍ରତ୍ୟେକ ଅଙ୍ଗ କୋଷରେ ତିଆରି ହେଲେ ସୁଦ୍ଧା ଗୋଟେ ଅଙ୍ଗର କୋଷ ଆଉ ଗୋଟେ ଅଙ୍ଗର କୋଷଠାରୁ ଭିନ୍ନ । ସେମାନଙ୍କର କାମ ମଧ୍ୟ ଅଲଗା ଅଲଗା ।

ମାଟି, ପଥର, ପାଣି ପରି ନିର୍ଜୀବ ପଦାର୍ଥର କୋଷ ନ ଥାଏ । ସଜୀବର କୋଷମାନେ ଭିନ୍ନ ଭିନ୍ନ ହୋଇ ଯାଇ ଅଲଗା ଅଲଗା ଅଙ୍ଗ ତିଆରି କରି ଥାଆନ୍ତି । ନିର୍ଜୀବଠାରେ ସେମିତି କିଛି ନ ଥାଏ ।

ଆଉ ଗୋଟେ ମଜା କଥା । ଆମର ଦେହରେ ଅଙ୍ଗ ଅନେକ ଏବଂ କୋଷ ଅନେକ ହେଲେ ସୁଦ୍ଧା ସେମାନେ ସମସ୍ତେ ମିଳିମିଶି କାମ କରନ୍ତି । ପୂରା ଦେହର ହିତ ପାଇଁ ସେମାନେ ଏକଜୁଟ ହୋଇ କାମ କରନ୍ତି । ନିର୍ଜୀବ ପଦାର୍ଥରେ ଏପରି କିଛି ହୋଇ ନ ଥାଏ ।

ଜୀବାଣୁ ପରି ଗୋଟେ ଏକ-କୋଷୀ ଜୀବ କଥା ନଆଯାଇ ପାରେ । କେବଳ ଗୋଟିଏ କୋଷରେ ଏହି ଜୀବଟି ତିଆରି । ତଥାପି ଅଣୁବୀକ୍ଷଣରେ ଦେଖିଲେ କୋଷ ଭିତରେ କେବଳ ଗୋଟେ ପ୍ରକାର ଜିନିଷ ନ ଥାଏ । ଗୋଟେ ଜିନିଷ ଭିନ୍ନେ ଭିନ୍ନେ ହୋଇଯାଏ ଏବଂ ଅଲଗା ଅଲଗା କାମ କରେ । ଅଲଗା ଅଲଗା କାମ କଲେ ସୁଦ୍ଧା ସେଗୁଡ଼ିକ ସବୁ ଜୀବର ହିତ ପାଇଁ ଲାଗି ଥାଆନ୍ତି । ଏହା ସଜୀବର ଲକ୍ଷଣ । ଏ ଲକ୍ଷଣ ନିର୍ଜୀବଠାରେ ଦେଖାଯାଏ ନାହିଁ ।

ମା'ଙ୍କଠାରୁ ମିଛା ଏଇ ସବୁ କଥା ଶୁଣିଲା । ଯେଉଁଠାରେ ସେ ବୁଝି ପାରିଲା ନାହିଁ, ସେଠାରେ ମା'ଙ୍କୁ ନଠେଇ ନଠେଇ ପଚାରିଲା । ଦେହଟା ଭିତରେ ଏମିତି କୋଠରୀ ଥାଏ ଏବଂ ଇଟା ଥାଏ ଜାଣି ସେ ଆଶ୍ଚର୍ଯ୍ୟ ହୋଇଗଲା ।

## ଗଢ଼ା ଚାଲିଥାଏ, ଭଙ୍ଗା ଚାଲି ଥାଏ

ସେ ଦିନ ମିଛାକୁ ସ୍କୁଲରେ ଡେରି ହେଲା । ଘରେ ପହଞ୍ଚିଲା କ୍ଷଣି ସେ ଖାଇବାକୁ ମାଗିଲା । ମା' ଖାଇବାକୁ ଦେଲେ । ମିଛା ଖାଇ ନେଲା ।

ଖାଇ ସାରି ମିଛା ମା'ଙ୍କୁ ପଚାରିଲା "ମା, ଆମେ ଖାଉଚେ କାହିଁକି ? କାଇଁ ଶିଲଟ୍ଟା ତ ଖାଉ ନାହିଁ. ପେନ୍‌ଟା ଖାଉ ନାହିଁ, ବାଲ୍‌ଟିଟା ଖାଉ ନାହିଁ । ଆମ ପାଇଁ ଖାଇବା ଦରକାର କିଆଁ ?"

“ଭଲ ପ୍ରଶ୍ନଟିଏ ପଚାରିଲୁ, ଝିଅ ।”—ମା’ ଖୁସି ହୋଇ କହିଲେ ।

“ତୁ ଭଲ ଉତ୍ତର ଦେବୁ, ମା”—ମିତା ଡାହାଣ ହାତର ପାପୁଲି ଦେଖେଇ କହିଲା ।



ମଣିଷ ଖାଏ      ଫ୍ରକ୍‌ଟା ଖାଏ ନାହିଁ

ମା’ ଖଣ୍ଡେ ପଥର ଆଣିଲେ । ସେଇ ପଥରଟା ହୁଏତ ଶହେ ବର୍ଷ ତଳେ ଯାହା ଥିଲା, ଆଜି ସେୟା ଅଛି । ତାହା ଭାତ ରୋଟି ଖାଏ ନାହିଁ, ପାଣି ପିଏ ନାହିଁ, ଝାଡ଼ା ଯାଏ ନାହିଁ, ପରିସ୍ରା କରେ ନାହିଁ, ନିଃଶ୍ୱାସ ନିଏ ନାହିଁ । ପଥରଟା ନିର୍ଜୀବ । ନିର୍ଜୀବ ଏଇ କାମ ଗୁଡ଼ା କରେ ନାହିଁ ।

କିନ୍ତୁ ସଜୀବର କଥା ନିଆରା । ଖାଦ୍ୟ ନ ଖାଇଲେ ସେ ବଞ୍ଚି ପାରିବ ନାହିଁ । ବଞ୍ଚିବା ପାଇଁ ସେ ଶକ୍ତି ଦରକାର କରେ । ସବୁବେଳେ ତା’ର ଦେହ ଶକ୍ତି ଖର୍ଚ୍ଚ କରୁଥାଏ । ଶକ୍ତି ଦେହ ଭିତରକୁ ନ ଆସିଲେ ଖର୍ଚ୍ଚ ହେବ କେମିତି ?

ଖାଦ୍ୟରେ ଶକ୍ତି ଥାଏ । ଆମେ ଭାତ, ରୋଟି, ଡାଲି, ତରକାରି, ମାଛ, ମାଂସ, ଅଣ୍ଡା, ଦୁଧ, ଖାଉ । ଏଇ ସବୁ ଜନିଷରେ ଶକ୍ତି ଥାଏ । ଖାଦ୍ୟ ପେଟରେ ହଜମ ହୁଏ । ହଜମ ହୋଇଥିବା ଖାଦ୍ୟସାର ରକ୍ତ ଭିତରକୁ ଯାଏ । ରକ୍ତରେ ବୁହା-ହୋଇ ଖାଦ୍ୟସାର କୋଷ ଭିତରକୁ ଯାଏ । କୋଷ ଖାଦ୍ୟ-ସାରକୁ ପୋଡ଼ି ଦିଏ । ତାହାଫଳରେ ଉତ୍ତାପ ବାହାରେ ଏବଂ ଶକ୍ତି ତିଆରି ହୁଏ ।

ଶକ୍ତି ପାଇଲେ ଆମ ଶରୀରର ଯନ୍ତ୍ରପାତି ସବୁ କାମ କରନ୍ତି । ବିନା ଶକ୍ତିରେ କାମ କରିବା ଅସମ୍ଭବ । ବିନା ଶକ୍ତି-ଖର୍ଚ୍ଚରେ ବଞ୍ଚି ରହିବା ଅସମ୍ଭବ ।

ଆମ ଶରୀରର କୋଷମାନଙ୍କରେ ଅନେକ ପ୍ରକାରର ଜନିଷ ଥାଏ । ସେଥି ଭିତରୁ ପ୍ରତି ଜନିଷଟି ସବୁବେଳେ ରହେ ନାହିଁ । ଜନିଷଟି ଭାଙ୍ଗି ହୋଇ ଯାଏ । ଜନିଷ ଭାଙ୍ଗ ହୋଇ ଯିବା ଦ୍ୱାରା ଗୁଡ଼ାଏ ମଇଳା ପଦାର୍ଥ ତିଆରି ହୁଏ । ସେଇ ମଇଳା ଜନିଷ ଗୁଡ଼ା ଆମର ନିଃଶ୍ୱାସ ପବନରେ, ମଳରେ ଓ ପରିସ୍ରାରେ ବାହାରି ଯାଆନ୍ତି ।

ତେବେ ଏଇ ଭଙ୍ଗା ହେବା କଥାଟା ଅବିକଳ ଘର-ଭଙ୍ଗା ପରି ନୁହେଁ । ଗୋଟେ ଘରକୁ ଭାଙ୍ଗି ଦେଲେ ତା' ଜାଗାରେ ଆଉ ଘରଟେ ଠିଆ ହୋଇ ରହେ ନାହିଁ । ଅନ୍ୟ ପକ୍ଷରେ, ଆମ ଶରୀରର କୋଷରେ ଭଙ୍ଗାରୁଜା କାମ ଚାଲିଥିଲେ ସୁଦ୍ଧା କୋଷ ସେଇମିତି ରହିଥାଏ । ଏହାର କାରଣ ହେଲା, ଭଙ୍ଗା ସାଙ୍ଗରେ ଗଢ଼ା ବି ଚାଲିଥାଏ ।

ଆମ ଦେହ ଭିତରେ ସବୁବେଳେ ଭଙ୍ଗା ଚାଲିଛି । ସବୁ-ବେଳେ ଗଢ଼ା ଚାଲିଛି । କିନ୍ତୁ ଏହି ଗଢ଼ାପାଇଁ ଜିନିଷ କୋଉଠୁ ଆସିବ ? ଘର ତିଆରି ପାଇଁ ଇଟା, ସିମେଣ୍ଟ, ବାଲି, ଚୋଡ଼ ଲୁହାଛଡ଼, କବାଟ, ଝରକା ଦରକାର । ଆମର ଦେହ ତିଆରିପାଇଁ ଘିଅ, ରୋଟି ଡାଲି, ତରକାରି, ଶାଗ, ଭଜା, ମାଛ, ମାଂସ, ଅଣ୍ଡା, ଦୁଧ ଓ ଫଳ ଦରକାର ।

ଆମେ ନ ଖାଇଲେ ବଞ୍ଚି ପାରିବା ନାହିଁ । ଏହା ସତ କଥା । ଆମେ ଭଙ୍ଗା ଜିନିଷକୁ ବାହାର ନ କଲେ ବଞ୍ଚି ପାରିବା ନାହିଁ । ଏହାମଧ୍ୟ ସତ କଥା । ଆମର ଛାତି ଭିତରେ ଦୁଇଟା ଫସ୍‌ଫସ୍ ଅଛି । ଆମର ଶରୀରରେ ଯେତେ ଦୂଷିତ ବାୟୁ ତିଆରି ହୁଏ, ତାକୁ ନାକ ବାଟଦେଇ ଫୁସ୍‌ଫୁସ୍ ବାହାର କରିଦିଏ । ଆମ ନିଃଶ୍ୱାସ ବନ୍ଦ ହୋଇ ଗଲେ ଆମେ ବଞ୍ଚି ପାରିବା ନାହିଁ ।

ଆମେ ଖାଦ୍ୟ ଖାଉ, ଖାଦ୍ୟ ପେଟରେ ହଜମ ହୁଏ । ଖାଦ୍ୟର ଯେଉଁ ଅଂଶ ହଜମ ହୋଇ ପାରେ ନାହିଁ । ତାହା ମଳ ହୋଇ ବାହାରି ଯାଏ । ମଳ ସାଙ୍ଗରେ ପିତ୍ତ ଓ ଆଉ କେତେଗୁଡ଼ିଏ ଜିନିଷ ଦେହରୁ ବାହାରି ଯାଏ । ମଳ ହୋଇ ଏହି ଯେଉଁ ଜିନିଷ ତିଆରି ହୁଏ, ତାହା ଆମର ସ୍ୱାସ୍ଥ୍ୟ ପାଇଁ ଭଲ ନୁହେଁ । ସେପରି ବିଷାକ୍ତ ଜିନିଷ ନ ବାହାରିଲେ ଆମେ ବଞ୍ଚି ପାରିବା ନାହିଁ ।

ଭଙ୍ଗାରୁଜା କାମବେଳେ ଗୁଡ଼ାଏ ବିଷାକ୍ତ ପଦାର୍ଥ ଆମର ଦେହ ଭିତରେ ତିଆରି ହୁଏ । ସେହି ଜିନିଷ ଗୁଡ଼ାକୁ ପାଣିରେ

ମିଶେଇ ବାହାର କରି ଦେବାକୁ ଆମର ଦେହ ଚେଷ୍ଟାକରେ । ଆମେ ପରିସ୍ରା କରୁ । ଆମର ପରିସ୍ରା ବନ୍ଦ ହୋଇଗଲେ ଆମେ ବଞ୍ଚି ପାରିବା ନାହିଁ ।

ଶରୀର ଭିତରେ ଗଢ଼ା ଚାଲିଥାଏ, ଭଙ୍ଗା ଚାଲିଥାଏ । ଜୀବନ ଥିବା ପର୍ଯ୍ୟନ୍ତ ଏଇ କଥା ଚାଲିଥାଏ । ଏହା ସଜୀବର ଲକ୍ଷଣ । ନିର୍ଜୀବଠାରେ ଏ ଲକ୍ଷଣ ଦେଖଯାଏ ନାହିଁ । ମା' ଏଇ କଥାକୁ ବୁଝେଇ ଦେଲେ । ମିଥା ସବୁ ବୁଝିନେଲା ।

## କୁନି ହାତୀ, ଛୁଆ ହାତୀ, ବଡ଼ ହାତୀ

ମିଥା ଟି.ଭିରେ ବଣୁଆ ଜନ୍ତୁମାନଙ୍କ ଉପରେ ଏକ କାର୍ଯ୍ୟକ୍ରମ ଦେଖୁଥିଲା । ତା' ଭିତରେ ହାତୀମାନେ ଆସିଲେ । ଗୋଟେ ମା-ହାତୀ ଥିଲା । ତା' ସାଙ୍ଗରେ ଆଉ ଦୁଇଟି ହାତୀ-ଛୁଆ ଥିଲେ । ଛୁଆମାନଙ୍କ ଭିତରେ ଗୋଟେ ଛଅ ମାସ ବୟସର କୁନିଟେ ଥିଲା । ଆର ଛୁଆଟିକୁ ପ୍ରାୟ ଏକ ବରଷ ବୟସ ହୋଇଯାଇଥିଲା ।

ମିଥା ପଚାରିଲା : "ମା', ଏଇ କୁନି ହାତୀଟା ସବୁବେଳେ କୁନି ହେଇ ରହିଥିବ ?"

"ନା ନା, ସେମିତ ହବ ନାଇଁ, ଝିଅ । ଏଇ କୁନିହାତୀ ବଡ ହେବ ; ବଢ଼ି ବଢ଼ି ଦିନେ ସେ ବୁଢ଼ୀ ହେଇଯିବ । ସଜୀବ ମାତ୍ରକେ ବଢ଼େ । ଆମେ କହୁ—ସଜୀବର ବୃଦ୍ଧି ହେଉଥାଏ । ଆଜ ତୁ ପିଲା ହେଇଚୁ । କେଇ ବରଷରେ ଯୁବତୀ

ହବୁ । ପୁଣି ଯେତେବେଳେ ଅଶୀ ବରଷ ପାଖା ପାଖି ହେବୁ ସେତେବେଳେ ବୁଢ଼ୀ ହୋଇଯିବୁ । ବୃଦ୍ଧି ଜୀବର ଲକ୍ଷଣ । ଏହା ମଣିଷ ପକ୍ଷରେ ସତ । ଗାଈ, ମଇଁଷି, ଘୋଡ଼ା, ଗଧ, ବାଘ, ଭାଲୁ, ହରିଣ, ସିଂହ, ହାତୀ, କୁକୁଡ଼ା, ବଗ, ପାରା ପରି ପଶୁମାନଙ୍କ ପାଇଁ ମଧ୍ୟ ସତ । ଗଛଲତା ସଜୀବ ହୋଇ ଥିବାରୁ ସେମାନଙ୍କ ପାଇଁ ମଧ୍ୟ ଏ କଥା ସତ ।"—ମା' ଏଇପରି ଅନେକ ଉଦାହରଣ ଦେଇ କହିଲେ ।

"ହଁ ତ, ମା' । ମୁଁ ନିଜେ ପରୀକ୍ଷା କରିବି । ତୋତେ ପଚାରୁଚି କ'ଣ ?—ମିତା ଖୁସି ମନରେ କହିଲା ।

"ତୁ କ'ଣ ପରୀକ୍ଷା କରିବୁ, ମିତା ?"



ଗଛର କ୍ରମବୃଦ୍ଧି   ପଥରର କ୍ରମବୃଦ୍ଧି ନାହିଁ

"ବଗିଚାରେ ସୂର୍ଯ୍ୟମୁଖୀ ଫୁଲର ମଞ୍ଜି ପୋତିଲି ।

ମାଟିରେ ଖତସାର ଦେଲି, ପାଣି ଢାଳିଲି । ମଞ୍ଜିରୁ ଗଛ ହେଲା । ଗଛ ଦି'ପତ୍ରରୁ ଚାରି ପତ୍ର ହେଲା । କୁନି ଗଛଟି ବଢ଼ିଲା, ବଡ଼ ହେଲା । ବଢ଼ି ବଢ଼ି ତା' ମୋ'ଠୁ ବେଶୀ ଉଞ୍ଚା ହେଇଗଲା । ଆଜି ସୂର୍ଯ୍ୟମୁଖୀ ଫୁଲ ଫୁଟିଚି । କି ସୁନ୍ଦର ସେଇ ଫୁଲ, ମା' । ସୂର୍ଯ୍ୟ ଯୁଆଡ଼େ, ଫୁଲଟି ସିଆଡ଼େ ମୁହଁ କରିଥିବ ।" —ନାଟକରେ ଅଭିନୟ କଲା ଭଳି ମିତା ତା' କଥା କହି ଚାଲିଲା ।

"ଆମ ବଗିଚାରେ ପଥର ଅଛି କି ନାହିଁ, ମିତା ?"—ମା' ପଚାରିଲେ ।

"ଗୋଟେ ଜାଗାରେ ପଥର ଗଦା ହେଇଅଛି, ମା' । ଶିମ୍ବୁ-ବୁଦା ମୂଳେ ପଥର-ଗଦା ।"

ସେଇ ପଥର କ'ଣ ଗଛ ପରି ବଢ଼ୁଛି ?"

"ମୋଟେ ନୁହେଁ ; ମା' । ଯେତେ ମାସ, ବରଷ ବିତି-ଗଲେ ସୁଦ୍ଧା ପଥରଟା ଯେତିକି ବଡ଼ ସେତିକି ବଡ଼ । ପଥରଟା ବଢ଼ିଲେ କେମିତି ହୁଅନ୍ତା, ମା' ?"

ପଥରଟା ବଢ଼ିବ ନାହିଁ ବୋଲି ମା' ବୁଝେଇ ଦେଲେ । ପଥରରେ ଜୀବ ନ ଥାଏ । ଯେତେ ଯେତେ ନିର୍ଜୀବ ପଦାର୍ଥ ଅଛି ; ତା' ସବୁ ବଢ଼େ ନାହିଁ । ନିର୍ଜୀବର ବୃଦ୍ଧି ହୁଏ ନାହିଁ ।

## ଲାଜକୁଳୀ ପତ୍ର ଲାଜେଇଲା

ବଗିଚାରେ ମାଳୀ କାମ କରୁଥିଲା । ଦଶ କିସମର ଗୋଲାପ ଫୁଲର ଗଛ ଦଶଟି କୁଣ୍ଡରେ ଲାଗିଥିଲା । ମାଳୀ

ସେଇ ଗଛଗୁଡ଼ିକୁ ଟେକି ନେଇ ଛାତ ଉପରେ ଥିବା ପାର୍ଶ୍ୱ-ପେଟ୍‌ରେ ରଖୁଥିଲି ।

ଏଇ କାମକୁ ମିତା ଦେଖୁଥିଲା । ତା'ର ମନରେ ଗୋଟେ ପ୍ରଶ୍ନ ଉଠିଲା । ମନୁଷ୍ୟ ସଜୀବ, ଗାଈ ସଜୀବ, କୁକୁର ସଜୀବ, ଶୁଆ ସଜୀବ । ଏମାନେ ସଜୀବ ହୋଇଥିବାରୁ ଚାଲି ବୁଲି କରନ୍ତି, ଏମାନଙ୍କର ଗତି ଅଛି । ଗୋଲାପ ଗଛ ସଜୀବ , ଆମ୍ବ ଗଛ ସଜୀବ, ପଣସ ଗଛ ସଜୀବ ; କିନ୍ତୁ ଗଛ ଗୋଟେ ଜାଗାରୁ ଆଉ ଗୋଟେ ଜାଗାକୁ ଯାଇ ପାରୁ ନାହିଁ । ତେବେ ଆମେ କୋଉ ଯୁକ୍ତିରେ ଗଛକୁ ସଜୀବ ବୋଲି କହିବା ?



ମିତା ମାଳୀ ପାଖରୁ କଣ୍ଟୁରିଟିଏ ଆଣିଲା । ସେ କଦଳୀ ଗଛଟା ଉପରେ ଚାରି ଚଟା ପକେଇଲା ।

ମାଳୀ ପାଟି କରି ଉଠିଲା । "ଗଛଟାକୁ ହାଣ ନା, ହାଣ ନା" କହି ଦୌଡ଼ି ଆସିଲା; ସେ ମିତାଠୁ କଟୁରିଟାକୁ ଛଡ଼େଇ ନେଲା ।

"ଆରେ ମିଣ୍ଟୁ, ମୁଁ ପରୀକ୍ଷା କରୁଚି । ତୁ ମୋ କାମରେ କାହିଁକି ବାଧା ଦେଲୁ ?"—ମିତା ଆପତ୍ତି କରିବା ସ୍ୱରରେ କହିଲା ।

ମିତା ମନେ ରଖିଥିଲା । ସେ ପଥରଟାକୁ ପିଟିଥିଲା, କୁକୁରଟାକୁ ପିଟିଥିଲା । ପଥର ଉଁ ଚୁଁ କଲାନାହିଁ । କୁକୁର କେଁ କେଁ କରି ରଡ଼ି ଛାଡ଼ିଲା, ଅଡଗ୍ଧା ପଳେଇଲା । ମା' କହିଥିଲେ, 'ପଥରର ଜୀବନ ନାହିଁ, କୁକୁରର ଜୀବନ ଅଛି ।"

ପଥରର ଜୀବନ ନାହିଁ ? ଏ କଥା ସତ । ତେବେ କଦଳୀ ଗଛର ଜୀବନ ଅଛି ବୋଲି ଆମେ କାହିଁକି କହିବା ? କଦଳୀ ଗଛଟାକୁ ଯେତେ ହାଣିଲେ ସୁଦ୍ଧା ସେଟା ଜଡ଼ ହୋଇ ଯେମିତି ସେମିତି ଠିଆ ହୋଇଛି । କଦଳୀ ଗଛଟା ସଜୀବ ନାଁ ନିର୍ଜୀବ ?

ମିତା ମା'ଙ୍କ ପାଖକୁ ଗଲା । ସେ ପଚାରିଲା, "ମା' ତୁ କହିଥିଲୁ—ଗଛଟା ସଜୀବ । ମୁଁ କହୁଛି—ଗଛଟା ନିର୍ଜୀବ, ତୋ କଥା ଠିକ୍ କି ମୋ କଥା ଠିକ୍ ?"

ବଗିଚାର ଗୋଟେ କୋଣରେ କେତୋଟି ଲାଜକୁଳୀ ଗଛ ଥିଲା । ମା' ମିତାକୁ ନେଇ ଲାଜକୁଳୀ ଗଛ ପାଖକୁ ଗଲେ । ଲାଜକୁଳୀ ପତ୍ରକୁ ଛୁଇଁବାକୁ ସେ ମିତାକୁ କହିଲେ । ମିତା

ସେମିତି କଲା । ଲାଜକୁଳୀ ଗଛ ବହୁତ ଲାଜେଇଲା । ସେ ତା'ର ପତ୍ରକୁ ବୁଜିଦେଲା ।



ଲାଜକୁଳୀ ଲତା ଲାଜେଇ ଯାଏ

ସକାଳେ ମା' ଓ ମିତା ସୂର୍ଯ୍ୟମୁଖୀ ଫୁଲ ପାଖକୁ ଗଲେ । ଫୁଲ ପୂର୍ବ ଦିଗକୁ ମୁହେଁଇ ଥିଲା । ସେମାନେ ଦିନ ବାରଟା-ବେଳେ ଯାଇ ସୂର୍ଯ୍ୟମୁଖୀକୁ ଦେଖିଲେ । ଫୁଲଟି ଉପରମୁହାଁ ହୋଇ ରହିଥିଲା । ସେମାନେ ସୂର୍ଯ୍ୟ ଅସ୍ତହେବା ପୂର୍ବରୁ ଫୁଲ ପାଖକୁ ଗଲେ । ଫୁଲଟି ପଶ୍ଚିମ ଦିଗକୁ ମୁହଁକରି ରହିଥିଲା । ସୂର୍ଯ୍ୟମୁଖୀ ସୂର୍ଯ୍ୟଙ୍କୁ ଚାହିଁ ରହିଥିଲା । ସେ ତା' ବେକ ମୋଡ଼ି କରି ସୂର୍ଯ୍ୟ ଆଡ଼କୁ ଚାହିଁ ରହିଥିଲା ।

ମା' ମିତାକୁ ନେଇ ରାସ୍ତାକୁ ଗଲେ । ରାସ୍ତା କଡ଼ରେ ବଡ଼ ବଡ଼ ରାଧାଚୂଡ଼ା ଗଛ ଠିଆ ହୋଇଥିଲା । କେତେକ ଲୋକ ଏଇ ଗଛଟିକୁ ବଡ଼ ଚକୁଣ୍ଡା ବୋଲି କହନ୍ତି । ହଳଦୀଆ ଫୁଲ ଫୁଟେ । ଛୁଇଁ ପରି ଫଳ ହୁଏ । ମା' ଓ ମିତା ରାଧାଚୂଡ଼ା ଗଛର ପତ୍ରକୁ ଦିନବେଳେ ଦେଖିଲେ; ପୁଣି ଯାଇ ସନ୍ଧ୍ୟାବେଳେ

ଦେଖିଲେ । ଦିନବେଳେ ଗଛ ପତ୍ରକୁ ମେଲେଇ ଥିଲା । ରାତିରେ ଗଛ ପତ୍ରକୁ ମୋଡ଼ିଦେଇ ଶୋଇ ଯାଇଥିଲା ।

ବଗିଚାରେ ଗୋଟେ ନଡ଼ିଆଗଛ ଥିଲା । ନଡ଼ିଆ ଗଛଟା ବଙ୍କାହୋଇ ଯାଇଥିଲା । ନଡ଼ିଆ ଗଛର ଗୋଟେ କଡ଼େ ଗହଳିଆ ଆମ୍ବଗଛଟେ ଥିଲା । ଆମ୍ବ ଗଛ କଡ଼ରୁ ନଡ଼ିଆ–ଗଛଟା ଓହରି ଯାଇ ଆଲୁଅ ଆଡ଼କୁ ବଙ୍କେଇ ଯାଇଥିଲା ।

ବଗିଚାରେ ମା' ନିଜେ ଗୋଟିଏ ଗଛ ଲଗେଇ ଥିଲେ । ଗଛଟିକୁ ସେ କିଣିକରି ଆଣିଥିଲେ । ଗଛଟିର 'ନାଁ ମାଛି-ଜନ୍ତା' । ମାଛି-ଜନ୍ତା ପତ୍ର ଉପରେ ଗୁଡ଼ାଏ ବାଳୁଆ ଶୁଙ୍କ ଠିଆ-



ମାଛି-ଜନ୍ତା ଗଛ ମାଛି ଖାଏ

ହୋଇଥିଲା । ଶୁଙ୍କ ଉପରେ ଗୋଟେ ମାଛି ଆସି ବସିଗଲା । ମାଛି ବସିବା ଯୋଗୁ ପତ୍ର ଉପରେ କିଛି ଚାପ ପଡ଼ିଲା । ହଠାତ୍ ପତ୍ରର ଦି' ଫାଳ ଜନ୍ତା ପରି ମୋଡ଼ି ହୋଇଗଲେ । ମାଛିଟା ପତ୍ରର ଜନ୍ତା ଭିତରେ ରହିଗଲା ।

ମଣିଷ ମାଛ, ମାଂସ ଖାଏ । ବଗ ମାଛ ଖାଏ । ଜଳରେ ବଢ଼ୁଥିବା ଓଧ ମାଛ ଖାଏ । କୁକୁଡ଼ା ପୋକ ଜୋକ ଖାଏ । କିନ୍ତୁ ଗଛ ବି ପୋକଜୋକ ଖାଏ ବୋଲି ମିତା କେବେ ଆଗରୁ ଜାଣି ନ ଥିଲା । ମା ଓ ମିତା ପରେ ମାଛି ଜନ୍ତା ଗଛ ପାଖକୁ ଆସିଲେ । ମିତା ଯାହା ଦେଖିଲା, ସେଥିରେ ସେ ତାଜୁବ୍ ହେଇଗଲା । ପତ୍ରଟି ମାଛିକୁ ଖାଇ ହଜମ କରି ଦେଇଥିଲା । ପୁଣି ଅଧିକ ମାଛି ଧରିବା ପାଇଁ ସେ ଜନ୍ତାକୁ ମେଲି ଦେଇଥିଲା ।

ଏଇସବୁ ଜିନିଷ ଦେଖେଇ ସାରିଲା ପରେ ମା' ମିତାକୁ ବୁଝେଇଲେ । ଜୀବନର କୌଣସି ଗୋଟିଏ ବା ଯୋଡ଼ିଏ ଲକ୍ଷଣ ନେଇ ସଜୀବ ବା ନିର୍ଜୀବ ବୋଲି କହି ହେବ ନାହିଁ । ଗଛ ସଜୀବ ହୋଇଥିଲେ ସୁଦ୍ଧା ଚାଲବୁଲ କରିପାରେ ନାହିଁ ; କିନ୍ତୁ ତା' ପାଖରେ ଜୀବନର ଅନ୍ୟ ଲକ୍ଷଣସବୁ ଥାଏ ।

ତଥାପି ଗଛ ପୂରାପୂରି ନିଶ୍ଚଳ ବୋଲି କହି ହେବ ନାହିଁ । ଗଛ ମାଟିରୁ ଖାଦ୍ୟ ଖାଏ ଏବଂ ପାଣି ପିଏ । ଚେର ସାହାଯ୍ୟରେ ଗଛ ଏହା କରିଥାଏ । ମାଟି ଭିତରକୁ ଗଛ ତା'ର ଚେରକୁ ପଠେଇ ଦିଏ । ଚେର ମାଟି ଭିତରକୁ ଯିବା ଦ୍ୱାରା ଗଛ ଠିଆ ହୁଏ ଏବଂ ବତାସରେ ଖସି ପଡ଼େ ନାହିଁ । ଏହା କରିବା ଦ୍ୱାରା ଗଛ ଗୋଟେ ଜାଗାରେ ରହି ଯାଏ, ଏକ ଜାଗାରୁ ଅନ୍ୟ ଜାଗାକୁ ଯାଇ ପାରେ ନାହିଁ ।

ଚାଲିବା ପାଇଁ ମଣିଷର ଓ ଗାଈ, ମଇଁଷି, ବାଘ, ସିଂହ, ହରିଣ ଇତ୍ୟାଦି ପଶୁମାନଙ୍କର ଗୋଡ଼ ଥାଏ । ଚଳିବା ପାଇଁ ସଂବାଲୁଆ, ଏଣ୍ଡୁଅ ଓ ସାପର ଦେହ ଗଢ଼ା ହୋଇଥାଏ ।

ଉଡ଼ିବା ପାଇଁ ପ୍ରଜାପତି, ପାରା, ଶୁଆ ଓ ବଗରେ ଡେଣା ଥାଏ। ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଯିବା ପାଇଁ ଗଛର ସେମିତି କିଛି ଅଙ୍ଗ ନ ଥାଏ।

ତଥାପି ଗଛ ଗୋଟିଏ ଜାଗାରେ ଠିଆ ହେଲେ ସୁଦ୍ଧା ତା'ର କାଣ୍ଡକୁ ନୁଆଁଇ ଦେଇ ପାରେ; ପତ୍ରକୁ ମୋଡ଼ି ଦେଇ-ପାରେ, ଫୁଲକୁ ମୋଡ଼ି ଦେଇପାରେ।

ମଣିଷର ଓ ପଶୁପକ୍ଷୀଙ୍କର ଦେହରେ ଧୋବ ଭାଗ ସୂତାପରି ସ୍ନାୟୁ ଥାଏ ଏବଂ ମୁଣ୍ଡରେ ମସ୍ତିଷ୍କ ଥାଏ। ଚିମୁଟି ଦେଲେ, ତାତଲା ଜିନିଷ ଲାଗିଗଲେ କିମ୍ବା ଆଉ କିଛି ଏମିତି ଘଟିଲେ, ସ୍ନାୟୁ ମସ୍ତିଷ୍କକୁ ଖବର ପଠେଇ ଦିଏ। ଆମେ ଟେଲିଫୋନ୍ ତାରରେ ଖବର ପଠେଇଲା ଭଳି ଶରୀର ସ୍ନାୟୁ ଦ୍ୱାରା ଖବର ପଠେଇ ଥାଏ। ମସ୍ତିଷ୍କରୁ ଆଦେଶ ଆସେ। ସେହି ସ୍ନାୟୁ ସାହାଯ୍ୟରେ ଆଦେଶ ଆସେ। ନିଆଁରେ ହାତଟା ବାଜିଗଲେ ହଠାତ୍ ହାତଟାକୁ ଆମେ ଘୁଞ୍ଚେଇ ଆଣୁ। ଉଦ୍ଦୀପନ ମିଳିଲା ମାତ୍ରେ ଆମେ ଅନୁକ୍ରିୟା ଦେଖଉ। ଆମର ଦେହରେ ସାୟୁ ଥିବା ଯୋଗୁଁ ଏପରି ହୋଇଥାଏ। ମାତ୍ର ଗଛରେ ସ୍ନାୟୁ ନ ଥାଏ; ମସ୍ତିଷ୍କ ନ ଥାଏ। ତଥାପି ଅନ୍ୟ ଉପାୟରେ ଗଛ ଅନୁକ୍ରିୟା ଦେଖେଇ ଥାଏ। ଲାଜକୁଳୀ ଲତାକୁ, ସୂର୍ଯ୍ୟମୁଖୀ ଫୁଲକୁ ଏବଂ ମାଛି ଜନ୍ତା ଗଛକୁ ଦେଖି-ସାରିଲା ପରେ ଲୋକ କ'ଣ ବିଶ୍ୱାସ କରିବ ? ଗଛ ମଧ୍ୟ ଉଦ୍ଦୀପନ ପାଇଲେ ଅନୁକ୍ରିୟା ଦେଖାଏ।

# କାଠ-ଗୋଡ଼ ଆଶ୍ରା-ବାଡ଼ି

ସେଦିନ ମିତା ସ୍କୁଲରୁ ଘରକୁ ଫେରୁଥିଲା । ଗୋଟିଏ ଲୋକ ରାଜପଥ କଡ଼ର ଚଲାବାଟରେ ଯାଉଥିଲା । ଲୋକଟିର ବାଁ ଗୋଡ଼ଟି ଥିଲା, ଡାହାଣ ଗୋଡ଼ଟି କଟି ଯାଇଥିଲା । ତା'ର ଡାହାଣ ଗୋଡ଼ରେ କାଠ-ଗୋଡ଼ଟିଏ ଖଞ୍ଜା ହୋଇଥିଲା ।



କଟା ଗୋଡ ଗଜରେ ନାହିଁ

କାଖ ତଳେ ସେ ଆଶ୍ରା-ବାଡ଼ି ଖଣ୍ଡିଏ ଜାକିଥିଲା । କାଠ-ଗୋଡ଼ ଓ ଆଶ୍ରା-ବାଡ଼ିକୁ ନେଇ ସେ ଚାଲୁଥିଲା ।

ମିତା ଘରେ ପହଞ୍ଚିଲା; ମୁହଁହାତ ଧୋଇ ନେଲା, ଖାଇଲା । ତା' ପରେ ସେ ବଗିଚାରେ ଟହଲ ମାରିଲା । ତାଙ୍କ ମାଳୀ ମିଣ୍ଟୁ ଗୋଟିଏ କଲମୀ ଆମ୍ବ ଗଛ ଲଗାଉଥିଲା । କଲମୀ ଗଛ ବିଷୟରେ ମିତା ମିଣ୍ଟୁକୁ ଅନେକ କଥା ପଚାରିଲା ।

ବଡ଼ ଆମ୍ବ ଗଛରୁ ଡାଳ ଖଣ୍ଡେ କଟା ଯାଇଛି । ସେଇ ଡାଳଟାକୁ ରୋଇଲେ ସେଟା ପୁଣି ପୂରା ଆମ୍ବଗଛଟେ ହବ ; ସେଥିରେ ଫୁଲ ଧରିବ, ଫଳ ଫଳିବ ।

ତାଙ୍କ ବାଡ଼ରେ ଥିବା ସଜନା ଗଛଟାକୁ ସେ ଦେଖିଛି । ମିଣ୍ଟୁ ଗଲବର୍ଷ ଗୋଟେ ସଜନା ଡାଳ ଆଣିଥିଲି । ଆଷାଢ଼



କଟା ସଜନା ଗଛରୁ ନୂଆ ଡାଳ ବାହାରେ

ମାସରେ ତାକୁ ସେ ମାଟିରେ ପୋତି ଦେଲି । ସେଇ ଡାଳଟାରୁ ଚେର ବାହାରିଲି । ଶାଖା ମେଲେଇଲି । ଆଜ ସେଟା ଗୋଟେ ବଡ଼ ସଜନା ଗଛ ହେଇ ବଢ଼ୁଚି ।

ତାଙ୍କ ବାଡ଼ରେ ଗୋଟେ ପିଜୁଳି ଗଛ ଅଛି । ସେଇ ଗଛଟାର ଡାଳ ଗୁଡ଼ା ଟେଲିଫୋନ ତାରରେ ବାଜିଲି । ଗଛଟାକୁ ହାଣି ଦିଆ ହେଲି । କିନ୍ତୁ ଗଛଟା ମଲି ନାହିଁ । ତା' କାଣ୍ଡରୁ ପୁଣି ପତ୍ର କଅଁଳିଲି ; ଶାଖା ବାହାରିଲି । ଆଜ ସେଥିରେ ପିଜୁଳି ଫଳିଚି ।

ମିତା ମା'ଙ୍କ ପାଖକୁ ଗଲା । ସେ ପଚାରିଲା ! 'ମା' ମଣିଷର ଗୋଡ଼ କଟି ଗଲେ ସେଥିରୁ ଗୋଡ଼ ବାହାରୁ ନାହିଁ କାହିଁକି ?"

"ବାହାରି ପାରିବ ନାହିଁ ।"—ମା' ଉତ୍ତର ଦେଲେ ।

"ତୋ ହୁକୁମରେ ବାହାରିବ ନାହିଁ, ନା କ'ଣ କାରଣ ଅଛି ?"

"ମଣିଷ ଶରୀରର ସେ କ୍ଷମତା ନାହିଁ । ପଶୁପକ୍ଷୀଙ୍କର ସେ କ୍ଷମତା ନାହିଁ ।"—ମା' ଅଳ୍ପ କଥାରେ କହି ଦେଲେ ।

"ସଜନା ଗଛର ଅଛି ; ଆମ୍ବ ଗଛ ଓ ପିଜୁଳି ଗଛର ଅଛି । ମଣିଷର କାହିଁକି ନାହିଁ ?"

"ଗଛର କ୍ଷମତା ଅଛି । ପ୍ରାଣୀମାନଙ୍କର ନାହିଁ । ପ୍ରାଣୀ ଯେତିକି ଅଧିକ ଉନ୍ନତ ହୁଏ, ସିଢ଼ିରେ ଉପରକୁ ଉଠେ, ସେ ଗୁଡ଼େ ନୂଆ କଥାରେ ଅଧିକ କ୍ଷମତା ପାଏ ; କିନ୍ତୁ ଆଉ ଗୁଡ଼େ କଥାରେ ପୁରୁଣା କ୍ଷମତାକୁ ହରେଇ ବସେ ।"

ମିତା ମା'ଙ୍କୁ ସେଇ ଲୋକଟି ବିଷୟରେ କହିଲା । ଗୋଡ଼ କଟି ଯାଇଥିବା, କାଠ-ଗୋଡ଼ ଲଗେଇ ଥିବା, ଆଣ୍ଠୁ-ବାଡ଼ି ଧରିଥିବା ଲୋକଟି ବିଷୟରେ ସେ କହିଲା ।

"ଥୁଣ୍ଟା ଗୋଡ଼ରୁ ଗୋଡ଼ଟେ ଗଜୁରିଥିଲେ କେମିତି ଭଲ ହୋଇଥା'ନ୍ତା, ମା' !"—ମିତା ଏ କଥା କହିଲାବେଳେ ତା'ର ହୃଦୟ ଭିତରଟା କଅଁଳ ହୋଇ ଯାଇଥିଲା ।

# ଲୋକେ ନ ଖାଇ ମରଗଲେ

ମିତା ସକାଳେ ଉଠି ଦାନ୍ତ ଘଷି ସାରିଥିଲା । ଖବର କାଗଜ ଆସିଲା । ସେଥିରେ ପ୍ରଥମ ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ଲେଖାଥିଲା . "ହଜାର ହଜାର ଲୋକ ଖାଇବାକୁ ନ ପାଇ ମରିଗଲେ ।"

ସେଠାରେ ଗଲା ବର୍ଷ ବର୍ଷା ଅଳ୍ପ ହୋଇଥିଲା । ଧାନ ମରିଗଲା । ଅନ୍ୟ ଫସଲ ମରିଗଲା । ମରୁଡ଼ି ପଡ଼ିଲା । ଲୋକେ ଖାଦ୍ୟ ପାଇ ପାରିଲେ ନାହିଁ । ଖାଇବାକୁ ନ ପାଇ ଲୋକେ ମରିଗଲେ ।

ମିତାର ମୁଣ୍ଡରେ ଗୋଟେ କଥା ଢୁକିଲା : "ଗଛ ତ ମଣିଷକୁ ଖାଇ ବଞ୍ଚୁ ନାହିଁ । ମଣିଷ ଗଛକୁ କିମ୍ବା ଗଛର ଫଳକୁ ନ ଖାଇଲେ ମରୁଛି କାହିଁକି ?"

ମିତା ମା'ଙ୍କ ପାଖକୁ ଗଲା । ସେ ତା'ର ଏଇ ପ୍ରଶ୍ନକୁ ଉଠେଇଲା ।

ମିତାର ଭାଇ ରାଧୁ ସେଠାରେ ଥିଲା ସେ କହିଲା—"ମିତା, ମଣିଷ ଗଛକୁ ନ ଖାଇ ମଧ୍ୟ ବଞ୍ଚି ପାରିବ । ଏସ୍କିମୋମାନେ ବଞ୍ଚୁନନ୍ତି । ମାଂସ ଖାଇ ସେମାନେ ବଞ୍ଚୁଛନ୍ତି ।"

ମା' କହିଲେ, "ରାଧୁ, ତୁ ଠିକ୍ କହିଲୁ । ଏସ୍କିମୋମାନେ ମାଂସ ଖାଇ ବଞ୍ଚନ୍ତି । କିନ୍ତୁ ମାଂସ ଆସିବ କୋଉଠୁ ? ଗାଈ, ମଇଁଷି, ହରିଣ, ଶମ୍ବର ଇତ୍ୟାଦି ପଶୁ ଘାସ ଖାଇଲେ ସିନା

ବଞ୍ଚିବେ । ପଶୁ ଘାସ ଖାଇଲା; ମଣିଷ ପଶୁକୁ ଖାଇଲା । ସିଧା ନ ହେଲେ ସୁଦ୍ଧା ବଙ୍କାରେ ମଣିଷ ଗଛକୁ ଖାଇଲା । ବିନା ଗଛରେ ମଣିଷ ଖାଦ୍ୟ ପାଇବ ନାହିଁ । ବିନା ଖାଦ୍ୟରେ ମଣିଷ ମରି-ଯିବ ।

"ଗଛ ମଣିଷକୁ, ଗାଈକୁ କିମ୍ବା ଛେଳିକୁ ନ ଖାଇ ବଞ୍ଚି ପାରେ । ମଣିଷ, ପଶୁ କିମ୍ବା ପକ୍ଷୀ ଗଛକୁ ନ ଖାଇ ବଞ୍ଚି ପାରିବ ନାହିଁ କାହିଁକି ?"—ଏଇ ପ୍ରଶ୍ନକୁ ମିତା ଦୋହରେଇଲା ।

ମା' ବୁଝେଇ ଦେଲେ । ଉଦ୍ଭିଦ ଓ ପ୍ରାଣୀ ଭିତରେ ଏଇଟା ଗୋଟେ ବଡ଼ ପ୍ରଭେଦ । ଉଦ୍ଭିଦ ତୁଳନାରେ ପ୍ରାଣୀ ବହୁତ ଆଗେଇ ଯାଇଛି । ସେଇ ଆଗେଇ ଯିବାରେ ସେ କେତେକ କାର୍ଯ୍ୟରେ ଅଧିକ ପାରଙ୍ଗମ ହୋଇ ପାରିଛି । କିନ୍ତୁ କେତେ ଗୁଡ଼ାଏ କାମ କରିବାର କ୍ଷମତାକୁ ସେ ହରେଇ ବସିଛି । ଉଦ୍ଭିଦ କେତେ ଗୁଡ଼ାଏ ମାମୁଲି ଜିନଷକୁ ନେଇ ତା'ର ଖାଦ୍ୟ ତିଆରି କରେ । ପ୍ରାଣୀ ସେଇ କାମକୁ କରି ପାରେ ନାହିଁ । ଉଦ୍ଭିଦ ଦ୍ୱାରା ତିଆରି ହୋଇଥିବା ଖାଦ୍ୟକୁ ଖାଇ ପ୍ରାଣୀ ବଞ୍ଚେ ।

ଏତିକିବେଳେ ମିତା ମା'ଙ୍କୁ ପଚାରିଲା : "ମା', ଉଦ୍ଭିଦ କ'ଣ, ପ୍ରାଣୀ କ'ଣ, ଏ କଥା ଗୁଡ଼ା ପୁଣି କ'ଣ କହୁଛୁ ?"

ଆମ୍ବ, ପଣସ, ନଡ଼ିଆ, ତାଳ, ବର, ଓସ୍ତ ଇତ୍ୟାଦି ଗଛ ଉଦ୍ଭିଦ । ଭେଣ୍ଡି, ଟମାଟୋ, କୋବି, ମୂଳା, ମଟର, ବାଇଗଣ, ଇତ୍ୟାଦି ଗଛ ଉଦ୍ଭିଦ । କଖାରୁ, ଲାଉ, କାକୁଡ଼ି, ପୋଟଳ, ପାନ ଇତ୍ୟାଦି ଲତା ଉଦ୍ଭିଦ । ଅନେକ କିସମର ଉଦ୍ଭିଦ ଥାଆନ୍ତି । "ଉଦ୍" ମାନେ ଉପରକୁ । "ଭିଦ୍" ମାନେ ଭେଦ

କରିବା, ଚେପଲ ଦେଇ ବାହାରିବା, ଫୁଟେଇ ଦେଇ ଉପର୍‌କୁ ବାହାରିବା । ମଞ୍ଜିକୁ ଓଦା ମାଟିରେ ପୋତି ଦେଲେ ଗଜା ବାହାରେ । ସେଇ ଗଜା ମାଟିକୁ ଭେଦି ଉପରକୁ ବାହାରି ପଡ଼େ । ଏପରି ଜିନିଷକୁ ଆମେ 'ଉଦ୍ଭିଦ' ବୋଲି କହୁ ।

ପ୍ରାଣ ଅଛି ଯାହାର, ସେ ପ୍ରାଣୀ । ମଣିଷ ଗୋଟିଏ ପ୍ରାଣୀ । ଗାଈ, ମଇଁଷି, କୁକୁର, ବିରାଡ଼ି, ଘୋଡ଼ା, ଇତ୍ୟାଦି, ପ୍ରାଣୀ । ବାଘ, ସିଂହ, ହାତୀ, ଭାଲୁ, ଶିଆଳ, ମିରିଗ, ଇତ୍ୟାଦି, ପ୍ରାଣୀ । ବାଇଚଢ଼େଇ, ଘରଚଟିଆ, ପାରା, କୁକୁଡ଼ା, ମୟୂର, ହଂସ, ବତକ, ବଣୀ, ଇତ୍ୟାଦି ପକ୍ଷୀ-ମାନେ ପ୍ରାଣୀ । ମାଛ, ବେଙ୍ଗ, କଙ୍କଡା, କଇଁଛ, ଇତ୍ୟାଦି, ପ୍ରାଣୀ । ସାପ, କୁମ୍ଭୀର, ଏଣ୍ଡୁଅ, ଚମ୍ପେଇନେଉଳ, କଙ୍କଡ଼ା ବିଛା, ତେନ୍ତୁଳିଆ ବିଛା, ଇତ୍ୟାଦି, ପ୍ରାଣୀ । କେଞ୍ଚୁଆ, ଝିଣ୍ଟିକା, ସଂବାଳୁଆ, ପ୍ରଜାପତି, ଉଇ, ମହୁମାଛି, ପିମ୍ପୁଡ଼ି, ଜନ୍ଦା, ଇତ୍ୟାଦି, ପ୍ରାଣୀ । ଅନେକ କିସମର ପ୍ରାଣୀ ଥାଆନ୍ତି ।

ଉଦ୍ଭିଦ ଚେର ସାହାଯ୍ୟରେ ମାଟିରୁ ପାଣି ନିଏ । ସେଇ ଚେର ସାହାଯ୍ୟରେ ସେ ମାଟିରୁ ସାର ନିଏ । ସାଧାରଣ ଜିନିଷକୁ ନେଇ ସେ ଖାଦ୍ୟ ତିଆରି କରି ନିଜର ମୂଳରେ, କାଣ୍ଡରେ, ପତ୍ରରେ ଓ ଫଳ ବା ମଞ୍ଜିରେ ସାଇତି ରଖେ । ଆମେ ମୁଗ, ହରଡ଼, ବିରି ଓ ବୁଟ ଡାଲି ଖାଉ । ସେଥିରେ ଥିବା ସାରକୁ ଉଦ୍ଭିଦ ତିଆରି କରିଥାଏ ଏବଂ ସାଇତି ରଖିଥାଏ । ପ୍ରାଣୀ ଏପରି କାମ କରି ପାରେ ନାହିଁ ।

ଉଦ୍‌ଭିଦ ଆଉ ଗୋଟେ ବଡ଼ କାମ କରେ । ତା'ର ପତ୍ରର ରଙ୍ଗ ଶାଗୁଆ । ସେଇ ଶାଗୁଆ ପତ୍ର ସୂର୍ଯ୍ୟ—କିରଣରୁ ଶକ୍ତି ଧରି ରଖେ । ସେଇ ଶକ୍ତିକୁ ସେ ଖାଦ୍ୟରେ ସାଇତି




ଉଦ୍ଭିଦ ନିଜେ ନିଜ ଖାଦ୍ୟ ତିଆରି କରେ

ଦିଏ । ଆମେ ଚାଉଳକୁ ଭାତ କରି ଖାଉ; ଗହମକୁ ରୋଟି କରି ଖାଉ; ଆଳୁକୁ ଭଜା ଓ ତରକାରି କରି ଖାଉ । ଏଥିରେ ଯେଉଁ ସାର ଥାଏ, ତାକୁ ଉଦ୍‌ଭିଦ ତିଆରି କରି ଥାଏ ଏବଂ ସାଇତି ରଖି ଥାଏ । ଏପରି କାମକୁ ପ୍ରାଣୀ କରି ପାରେ ନାହିଁ ।

ମିତା ସବୁ ଦିନେ ଭାତ ଖାଇଛି, ରୋଟି ଖାଇଛି, ତରକାରି, ଭଜା ଖାଇଛି, କଦଳୀ, କମଳା, ସେଓ, କାକୁଡ଼ି, ପିଜୁଳି ଖାଇଛି ଦୁଧ, ଅଣ୍ଡା, ମାଛ, ମାଂସ ଖାଇଛି । ସେ

କେବେ ଏଇ କଥାକୁ ଭାବି ନ ଥିଲା । ଗଛ ତିଆରି କରିଥିବା ଖାଦ୍ୟକୁ ସେ ଖାଇ ବଞ୍ଚୁଛି ବୋଲି ସେ ଭାବି ନ ଥିଲା । ପୁଣି



ମଣିଷ ଉଦ୍ଭିଦ ଖାଇ ବଞ୍ଚେ

ଏମିତି କାମକୁ ମଣିଷ କରି ପାରିବ ନାହିଁ ବୋଲି ସେ ଜାଣି ନ ଥିଲା । ମା' ବୁଝେଇ ଦେଲେ । ମିଠା ବୁଝିଗଲା ।

## ଗଛ ହସୁ ନାହିଁ କିଆଁ ?

ମିଠା ବଗିଚାରେ ଖେଳୁଥିଲା । ସେ ଗୋଲାପ ଫୁଲକୁ ଦେଖୁଥିଲା । ଗୋଲାପ ଫୁଲ ବଡ ସୁନ୍ଦର ଦିଶୁଥିଲା ।

ମିଠା ଗୋଲାପ ଗଛ ସାଙ୍ଗେ କଥା ହେଲା । ମିଠା କହୁଥିଲା । ଗୋଲାପ ଗଛ ତୁନି ହୋଇ ରହିଥିଲା ।

"ଗୋଲାପ ଗଛ, ତୁ ହସୁନାହୁଁ କାହିଁକି ?"— ମିତା ଏଇ କଥାକୁ ବାରମ୍ବାର କହୁଥିଲା ।

କିନ୍ତୁ ଗୋଲାପ ଗଛ ଥରଟିଏ ହେଲେ ହସିଲା ନାହିଁ ।

ଗୋଲାପ ଗଛ ମିତାର କଥା ମାନିଲା ନାହିଁ କାହିଁକି ? ମିତା ରୋଷ ମନରେ ମା'ଙ୍କ ପାଖକୁ ଗଲା । ସେ ମା'ଙ୍କୁ ପଚାରିଲା, "ଗୋଲାପ ଗଛ ହସୁ ନାହିଁ କିଆଁ ?"





ଗୋଲାପ, ଗାଈ ହସନ୍ତି ନାହିଁ



ମଣିଷ ହସେ

"ଗଛ ହସି ପାରିବ ନାହିଁ, ମିତା" – ମା' କହିଲେ ।

"ମୁଁ ପାରିବି, ତୁ ପାରିବୁ, ଗଛ କାହିଁକି ପାରିବ ନାହିଁ ?" —ମିତା ଜୋର ଦେଇ ପଚାରିଲା ।

ମେଣ୍ଢାକୁ ମା' ବୁଝେଇ ଦେଲେ । ଗଛ ହସି ପାରିବ ନାହିଁ । ଏପରିକି ପକ୍ଷୀମାନେ, ପଶୁମାନେ ପ୍ରାଣୀ ହେଲେ ସୁଦ୍ଧା ହସି ପାରିବେ ନାହିଁ, କଥାକହି ପାରିବେ ନାହିଁ ।

ଭିନ୍ନ ଭିନ୍ନ କାମ କରିବା ପାଇଁ ଶରୀରରେ ଭିନ୍ନ ଭିନ୍ନ ଅଙ୍ଗ ଅଛି । ଯେଉଁ ଜୀବ ଜାତି ଯେତେ ଅଧିକ ଉନ୍ନତ, ତା'ର ଅଙ୍ଗ ଗଠନ ସେତେ ଅଧିକ ଜଟିଳ । ପ୍ରାଣୀମାନଙ୍କର ଅଙ୍ଗ ଗଠନ ଉଦ୍ଭିଦର ଅଙ୍ଗ ଗଠନ ତୁଳନାରେ ଅଧିକ ଜଟିଳ । ପକ୍ଷୀ ଓ ପଶୁମାନଙ୍କ ତୁଳନାରେ ମନୁଷ୍ୟର କେତୋଟି ଅଙ୍ଗ ଅଧିକ ଉନ୍ନତ ।

ଗଛର ଚେର, କାଣ୍ଡ, ଡାଳ ଓ ପତ୍ର ଅଛି । କିନ୍ତୁ ପ୍ରାଣୀମାନଙ୍କର ଶରୀରରେ ଅନେକ ପ୍ରକାରର ଯନ୍ତ୍ର ଅଛି । ଆମର ଗୋଡ଼ ନ ଥିଲେ ଆମେ ଚାଲି ପାରନ୍ତେ ନାହିଁ । ହାତ ଥିବାରୁ ଆମେ ଜିନିଷକୁ ଧରି ପାରୁଛେ । ଆଖିରେ ଦେଖି ପାରୁଛେ । କାନରେ ଶୁଣି ପାରୁଛେ । ନାକରେ ଶୁଙ୍ଘି ପାରୁଛେ । ଆମର ଦେହ ଭିତରେ ଅନେକ ଯନ୍ତ୍ରପାତି ଅଛି । ଆମର ମୁଣ୍ଡରେ **ମସ୍ତିଷ୍କ** ଅଛି; ଛାତି ଭିତରେ ହୃତ୍‌ପିଣ୍ଡ ଓ ଫୁସ୍‌ଫୁସ୍ ଅଛି; **ପେଟ** ଭିତରେ ପାକସ୍ଥଳୀ, ଅନ୍ତ୍ର, ଯକୃତ୍ ବା କଲିଜା, ବୃକ୍କ ବା ମୂତ୍ରଗ୍ରନ୍ଥି ଏବଂ ମୂତ୍ରାଶୟ ଅଛି ।

ପ୍ରାଣୀର ଶରୀରରେ ଯେତେ ଯେତେ ଯନ୍ତ୍ରପାତି ଅଛି, ଉଦ୍‌ଭିଦ ଭିତରେ ସେପରି କିଛି ନାହିଁ । ଉଦ୍‌ଭିଦର ଗଠନ ସରଳ । ପ୍ରାଣୀର ଦେହ-ଗଠନ ଜଟିଳ ।

ପଶୁପକ୍ଷୀ ଓ ମଣିଷ ଖାଦ୍ୟ ଖାଏ, ପରିଶ୍ରମ କରେ । ଶରୀରରେ ଅନେକ ମଇଳା ପଦାର୍ଥ ତିଆରି ହୁଏ । କିଛି

ମଳ ବା ଝାଡା ଭାବରେ ବାହାରି ଯାଏ, ଆଉ କିଛି ମୂତ୍ର ବା ପରିସ୍ରା ଭାବରେ ବାହାରି ଯାଏ । ଛାତି ଭିତରେ ଥିବା ଦୁଇଟି ଫୁସ୍‌ଫୁସ୍ ମଇଳା ପବନକୁ ନାକ ଦେଇ ବାହାର କରି ଦିଅନ୍ତି ।

ଗଛର ପତ୍ରରେ କିଛି ଯନ୍ତ୍ର ଅଛି । ତାହା ମଇଳା ବାୟୁକୁ ବାହାର କରେ । ସେହି ମଇଳା ବାୟୁକୁ ବୈଜ୍ଞାନିକମାନେ ଗୋଟେ ନାଁ ଦେଇଛନ୍ତି । ସେଇ ନାଁ ଟି ହେଲା—"ଅଙ୍ଗାର-କାମ୍ଳ" ।

ଅନ୍ୟ ଦୂଷିତ ପଦାର୍ଥକୁ ବାହାର କରିବା ପାଇଁ ଗଛରେ କୌଣସି ଅଙ୍ଗ ନ ଥାଏ । କିନ୍ତୁ ଗଛ ଗୋଟେ କାମ କରେ । ମଇଳ ପଦାର୍ଥ ଗୁଡ଼ା ଗଛ ଭିତରେ ଘୂରି ବୁଲନ୍ତି; ଭଲ ହୋଇ ଯାଆନ୍ତି; ଭଲ କାମରେ ଲାଗନ୍ତି ।

## ଗଛ ଟାଣ ହେଲା କାହିଁକି ?

ମିତା ବୁଲି ଯାଇଥିଲା । ବାଟରେ ତିଆରି ହଉଥିବା ଗୋଟେ ଘରକୁ ସେ ଦେଖିଲା । ଟାଇଲ ଛାତ, ଶାଳ ଖୁଣ୍ଟ । ପୂରା ଘରର ଓଜନ ଶାଳ ଖୁଣ୍ଟ ଉପରେ ପଡ଼ୁଥିଲା ।

ସେଦିନ ମିତା ମା'ଙ୍କୁ ପଚାରିଥିଲା, "ଖୁଣ୍ଟଟା ଏତେ ଟାଣ ହେଲା କେମିତି ?"

ପାକଲ କାଠରେ ଗୋଟେ ଟାଣ ଜିନିଷ ଥାଏ ବୋଲି ମା' କହିଲେ । ସେଇ ଟାଣ ଜିନିଷଟା ବିଷୟରେ ସେ ଆଜି କହିବେ

ନାହିଁ । ବଡ଼ ହେଲେ ମିତା ପଢ଼ିବ, ଅଧିକ ଜାଣିବ । କିନ୍ତୁ ଆଜ ସେ ତୁଳାର ସୂତା ବିଷୟରେ କହିବେ ।

ଆଦିମ ମଣିଷ ଲଙ୍ଗଳା ହୋଇ ବୁଲୁଥିଲା । ପ୍ରଥମେ ଗଛର ବକଳ ପିନ୍ଧିବାକୁ ସେ ଶିଖିଲା । ପରେ ସେ ତୁଳା ଗଛକୁ ଚାଷ କଲା । ତୁଳାରୁ ସେ ସୂତା ତିଆରି କଲା ; ସୂତା ନେଇ ଲୁଗା ବୁଣିଲା ; ଲୁଗା ପିନ୍ଧିଲା ।

ତୁଳା ସେଲୁଲୋଜ ନାମକ ଜିନିଷରେ ତିଆରି । କାଉଁରିଆ ବା ଲଳିତା ଡାଙ୍ଗ ଉପରେ ଯେଉଁ ଚୋପା ଥାଏ, ତାହା ଖୋଳ । ସେହି ଖୋଳ ସେଲୁଲୋଜରେ ତିଆରି । ଏହି ସେଲୁଲୋଜ ଅତି ଶକ୍ତ ଜିନିଷ । ଏହା ଗୋଟେ ତନ୍ତୁ ।

ପଶୁପକ୍ଷୀ ଓ ମଣିଷର ଶରୀର କୋଷରେ ତିଆରି । ଘର ଯେମିତି ଇଟାରେ ତିଆରି, ଆମର ଦେହ ସେମିତି କୋଷରେ ତିଆରି ।

ଗଛ ମଧ୍ୟ ସେହିପରି କୋଷରେ ତିଆରି । ମାତ୍ର ଗୋଟିଏ ପ୍ରଭେଦ ଅଛି । ଗଛର କୋଷ ଯେଉଁ କାନ୍ଥରେ ଘେରେଇ ହୋଇଥାଏ, ତାହା ସେଲୁଲୋଜ । ପ୍ରାଣୀର କୋଷ ଯେଉଁ କାନ୍ଥରେ ଘେରେଇ ହୋଇଥାଏ, ସେଥିରେ ସେଲୁଲୋଜ ନ ଥାଏ । ତାହା ଆଉ ଏକ କଅଁଳିଆ ଜିନିଷରେ ତିଆରି ହୋଇ-ଥାଏ ।

ଏହି ଫରକ ରହିଥିବାରୁ ପ୍ରାଣୀର ଦେହ ତୁଳନାରେ ଗଛ ଅଧିକ ଟାଣ ।

# ଜୀବନ ଜିନିଷଟାକୁ ଦେଖିବା କେମିତି ?

ଯାତ୍ରା ଭିତରେ ଅନେକ ଦିନ ହେଲା ମିତାକୁ ମା' ଜୀବନ ବିଷୟରେ ପଢ଼ାଉ ଥିଲେ । ପ୍ରଥମେ ସେ ସଜୀବ ଓ ନିର୍ଜୀବ ଭିତରେ ଥିବା ପ୍ରଭେଦକୁ ବୁଝେଇଲେ । ତା' ପରେ ସେ ଉଦ୍ଭିଦ ଓ ପ୍ରାଣୀମାନଙ୍କ ଭିତରେ ଥିବା ପାର୍ଥକ୍ୟକୁ ବୁଝେଇ ଦେଲେ । ମିତା କେତେ କଥା ପଚାରିଲା । ମା' ଉତ୍ତର ଦେଲେ । ମିତା ସବୁ ବୁଝିଗଲା ।

ବୁଝିବାକୁ ମିତାର ଗୋଟେ କଥା ବାକୀ ରହିଗଲା । "ଜୀବନ" ଜିନିଷଟା କ'ଣ ? ତା' ଦେଖିବାକୁ କେମିତି ? ତା' କେତେ ବଡ଼ ? ତା'ର ରଙ୍ଗ କ'ଣ ? ତା'ର ସ୍ୱାଦ କେମିତି ? ତା'ର ଗନ୍ଧ କେମିତି ? ତା' କ'ଣ କାଠ ପରି ଘନ ? ତା' କ'ଣ ପାଣି ପରି ତରଳ ? ତା' କ'ଣ ପବନ ପରି ଜିନିଷ ?

ମା' ମିତାର ପ୍ରଶ୍ନକୁ ଶୁଣି ନେଲେ । ଏପରି ପ୍ରଶ୍ନ କେବଳ ଛୋଟ ପିଲାଙ୍କ ମୁଣ୍ଡରେ ଆସେ ନାହିଁ । ବଡ଼ ଲୋକମାନେ ; ଏପରିକି ପଣ୍ଡିତ ଲୋକମାନେ ମଧ୍ୟ ଏଇ ପ୍ରଶ୍ନ ନେଇ ଗୋଲକ-ଧନ୍ଦାରେ ପଡ଼ି ଥାଆନ୍ତି ।

"ଜୀବନ" ବୋଲି କୌଣସି ଜିନିଷ ନାହିଁ । ତେଣୁ ତା'ର ଆକାର, ରୂପ, ରଙ୍ଗ ସ୍ୱାଦ, ଗନ୍ଧ ପରି ଗୁଣ ରହିବାର ପ୍ରଶ୍ନ ଉଠେ ନାହିଁ । ଏଇ କଥା ମା ସଫା ସଫା କହିଦେଲେ ।

ପ୍ରଥମେ ନିର୍ଜୀବ ପଦାର୍ଥ ଥିଲା । ସଜୀବ ପଦାର୍ଥ ବହୁ ପରେ ଦେଖାଗଲା ।

ପଦାର୍ଥ ବଦଳି ଗଲା । ନିର୍ଜୀବ ପଦାର୍ଥ ବଦଳି ଯାଇ ଗୋଟେ ଅବସ୍ଥାରେ ପହଞ୍ଚିଲା । ଏହି ଅବସ୍ଥାରେ ପଦାର୍ଥର ଲକ୍ଷଣ ନିଆରା ହେଲା । ଏହି ଲକ୍ଷଣ ଗୁଡ଼ିକୁ ଆମେ ଜୀବନର ଲକ୍ଷଣ ବୋଲି କହୁଲୁ । କେବଳ ଅବସ୍ଥାରେ ଫରକ ଥିବା ଛଡ଼ା ସଜୀବ ଓ ନିର୍ଜୀବ ଭିତରେ କୌଣସି ପ୍ରଭେଦ ନ ଥାଏ ।

ଯେପରି ଗଛର ମଞ୍ଜି ଥାଏ, ସେପରି ଜୀବନର ମଞ୍ଜି ଥାଏ । ଜୀବନର ମଞ୍ଜିକୁ ଆମେ ଡ଼ି. ଏନ୍. ଏ ବା ଆର୍ ଏନ୍ ଏ ବୋଲି କହୁ । ଏହି ମଞ୍ଜି ନିର୍ଜୀବ ପଦାର୍ଥରୁ ତିଆରି ହେଲା । ପଦାର୍ଥ ଏକ ଅବସ୍ଥାରୁ ଆଉ ଏକ ଅବସ୍ଥାକୁ ଚାଲି ଆସିଲା । ପ୍ରଥମେ ଯେଉଁ ସଜୀବ ଜିନିଷ ତିଆରି ହେଲା, ତାକୁ ଆମେ ଭୂତାଣୁ ବୋଲି କହୁଲୁ ।

ନଈର ଗୋଟେ ପାଖରେ ସବୁଜ ପାହାଡ଼ । ଆଉ ଗୋଟେ ପାଖରେ ଗହୀର ଜମି । ପାହାଡ଼ ଓ ଗହୀରକୁ ଗୋଟେ ପୋଲ ଯୋଡ଼ି ଦେଇଥାଏ ।

ଠିକ୍ ସେହିପରି ନିର୍ଜୀବ ଓ ସଜୀବ ଭିତରେ ଭୂତାଣୁ ଗୋଟେ ପୋଲ । ଗୋଟିଏ ଉଦାହରଣ ନିଆଯାଇ ପାରେ । ଧୂଆଁ-ପତ୍ରରେ ଗୋଟେ ଭୂତାଣୁ ଛଉଆ ରୋଗ କରେ । ଏହି ଭୂତାଣୁଟି ସଜୀବର ଲକ୍ଷଣ ଦେଖାଏ, ନିର୍ଜୀବର ଲକ୍ଷଣ ମଧ୍ୟ ଦେଖାଏ ।

ନିର୍ଜୀବ ଯେଉଁ ପଦାର୍ଥରେ ତିଆରି, ସଜୀବ ସେଇ ପଦାର୍ଥରେ ତିଆରି ହୋଇ ପାରେ । କେବଳ ଅବସ୍ଥାରେ

ଫଟକ ଆସଥାଏ । କେତେ ଗୁଡ଼ଏ ଲକ୍ଷଣ ଦେଖି ଆମେ ପଦାର୍ଥକୁ 'ସଜୀବ ବୋଲ କହୁ । ପଦାର୍ଥର ଗଠନ ଏକ ଅବସ୍ଥାରେ ପହଞ୍ଚିଲେ ଏହ ସଜୀବ ଲକ୍ଷଣ ଗୁଡ଼କ ଦେଖିବାକୁ ମିଳଥାଏ ।

ତା ନହେଲେ "ଜୀବନ" ବୋଲି କଛୁ ନ ଥାଏ । ଏହା ଏକ ଜନଷ ନୁହେଁ । ପାଣିକୁ ଥଣ୍ଡା କରଦେଲେ ବରଫ ମିଳେ । ପାଣିକୁ ଫୁଟେଇ ଦେଲେ ବାମ୍ଫ ମିଳେ । ମାତ୍ର ବରଫ ଓ ବାମ୍ଫର ଜନଷ ଯାହା, ପାଣିର ଜନଷ ସେୟା । ସେହପର ନର୍ଜୀବର ଜନଷ ଯାହା, ସଜୀବର ଜନଷ ସେୟା ।
ମିତା ମା'ଙ୍କଠୁ ସବୁ କଥା ଶୁଣିଲା । ସେ ଆଶ୍ଚର୍ଯ୍ୟ ହୋଇଗଲା । ସେ ଖୁସି ହୋଇଗଲା ।

## ରୋଟିରୁ ଫିମ୍ପି ବାହାରଲା

ମିତାର ମା ଗୋଟିଏ ପାଉଁରୋଟି କିଣିଥିଲେ । ରୋଟିକୁ କାଟି ସ୍ଲାଇସ୍ କଲାବେଳେ ଖଣ୍ଡେ ତଳେ ଖସି ପଡ଼ଲା । ସେଇ ଖଣ୍ଡକୁ ମା' ଅଳଆ-ପାଚଆ ଭିତରକୁ ଫିଙ୍ଗି ଦେଲେ ।

ମେଘୁଆ ପାଗ ହୋଇଥିଲା । ଗରମ ବି ଲାଗୁଥିଲା । ଦୁଇ-ଦନ ଭିତରେ ଅଳଆ-ପାଚଆଟିକୁ କେହ ସଫା କର ନ ଥିଲେ । ମିତା ପାଚଆଟାକୁ ଦେଖି ଦେଲା । ରୋଟି ଖଣ୍ଡକରେ ଫିମ୍ପି ଲାଗି ଯାଇଥିଲା । ମିତା ଫିମ୍ପିକୁ ଦେଖିଲା । ମା' ଯାହା କହଥିଲେ, ତା'ର ପରୀକ୍ଷା ହୋଇଗଲା, ପ୍ରମାଣ ମିଳଗଲା ବୋଲି ମିତା ଭାବନେଲା ।

ରେଟି ଖଣ୍ଡକ ନିର୍ଜୀବ । ସେଇ ରେଟିରୁ ଫିମ୍ପି ଜାତ ହେଲା । ଫିମ୍ପିଟା ପରା ସଜୀବ । ମା' ଦିନେ ଏକଥା କହୁଥିଲେ । ଗୋଟେ ଅବସ୍ଥାରେ ରେଟିଟା ନିର୍ଜୀବ ଥିଲା । ଆଉ ଗୋଟେ ଅବସ୍ଥାରେ ନିର୍ଜୀବ ରେଟିଟା ସଜୀବ ହୋଇଗଲା ।

ଫିମ୍ପିବସା ରେଟି ଖଣ୍ଡକୁ ନେଇ ମିତା ମା'ଙ୍କ ପାଖକୁ ଦୌଡ଼ିଲା । ନିର୍ଜୀବଟା ସଜୀବ ହୋଇଗଲା ବୋଲି ସେ ହେଣ୍ଡୁ ମାରି ପାଟି କଲା ।

ମା' ଟିକେ ମୁରୁକି ହସି ଦେଲେ, ମୁଣ୍ଡ ଝୁଙ୍ଗାଇଲେ ।

"ମୁଁ ଠିକ୍ କହୁଛି କି ଭୁଲ୍ କହୁଛି, ମା' ?"—ମିତା ମା'ଙ୍କ ମୁହଁକୁ ଚାହିଁ ପଚାରିଲା ।

"କଥାଟା ଠିକ୍ ନୁହେଁ, ମିତା ।"—ମା' ଉତ୍ତର ଦେଲେ ।

ମା' ବୁଝେଇ ଦେଲେ । ମଣିଷରୁ ମଣିଷ ଛୁଆ ଜନ୍ମ ହୁଏ । ଗାଈରୁ ବାଛୁରୀ ଜନ୍ମ ହୁଏ । କୁକୁରରୁ କୁକୁର ଛୁଆ ଜନ୍ମ ହୁଏ । ଆମ୍ବ—ଟାକୁଆରୁ ଆମ୍ବ - ଗଛ ବାହାରେ । ଶିମ୍ବ—ମଞ୍ଜିରୁ ଶିମ୍ବ—ଗଛ ହୁଏ । ସେହିପରି ଫିମ୍ପିରୁ ଫିମ୍ପି ଜନ୍ମ ହୁଏ । ରେଟିରୁ କେବେ ଫିମ୍ପି ଜନ୍ମ ହୋଇ ପାରିବ ନାହିଁ ।

ମିତା ମୁଣ୍ଡରେ ହାତଦେଲା । ସେ ତ ବୁଝିଥିଲା, ନିର୍ଜୀବରୁ ସଜୀବ ତିଆରି ହୋଇଯାଏ । ତାକୁ ଏ କଥା ମା' କହିଥିଲେ । ଆଜି ପୁଣି ମା' ନିଆରା କହୁଛନ୍ତି । ସେ ତାଙ୍କ ମତଟାକୁ ବଦଳେଇ ଦେଲେଣି । ତାଙ୍କର କୋଉ କଥାଟା ସତ ? ଆଗ କଥାଟା ନା ଏବର କଥାଟା ?

ମା' ପୁଣି ମିତାକୁ ବୁଝେଇଲେ । ଜୀବନର ମଞ୍ଜିକୁ ସେ ଡ଼ି. ଏନ୍. ଏ. ବା ଆର୍. ଏନ୍. ଏ. କହୁଥିଲେ ସେଇ ମଞ୍ଜିଟା ପ୍ରଥମେ ନିର୍ଜୀବରୁ ତିଆରି ହୋଇଥିଲା । ତା ସତ; କିନ୍ତୁ ସେଇ କଥାଟାକୁ ଭିନ୍ନ ଭିନ୍ନ ଗଛ କିମ୍ବା ପଶୁପକ୍ଷୀ ଓ ମଣିଷ ପାଇଁ ଲାଗେଇଲେ ଭୁଲ ହୋଇଯାଏ । ଯେତେ ଯେତେ ଜୀବଜାତି ଅଛନ୍ତି; ପ୍ରତ୍ୟେକର ମା' ବାପା ଅଛନ୍ତି । ହଁ, ଟିକିଏ ତଳୁଆ ଦେଖିଲେ, ଭୂତାଣୁ ଜୀବାଣୁ ଇତ୍ୟାଦିର ମା' ଓ ବାପା ନିଆରା ହୋଇ ନ ଥାନ୍ତି । ତଥାପି ଫିମ୍ପି ଫିମ୍ପିକୁ ଜନ୍ମ କରିବ । ଫିମ୍ପି ଜୀବାଣୁ କିମ୍ବା ଭୂତାଣୁକୁ ଜନ୍ମ କରି ପାରିବ ନାହିଁ । ପାଉଁରୋଟିରୁ ଫିମ୍ପି ଜନ୍ମ ହୋଇ ପାରିବ ନାହିଁ ।

"ତୋ କଥାକୁ ମାନି ନେଲି, ମା' । ତଥାପି ମୋ ମନରେ ସନ୍ଦେହ ରହିଗଲା ।" —ମିତା ମୁଣ୍ଡରେ ହାତ ଦେଇ କହିଲା ।

"ତୁ ପଗ୍ଳିର ଝିଅ, ମୁଁ ବୁଝେଇ ଦେବି । ସନ୍ଦେହ କାହିଁକି ରହିବ ?"—ମା' ମିତାର ପିଠି ଆପୁଡ଼େଇ କହିଲେ ।

"ଯୋଉ ରୋଟି ଖଣ୍ଡିକୁ ତୁ ଅଲଗା-ପାଣିଆରେ ଫିଙ୍ଗି ଦେଇଥିଲୁ । ସେଥିରେ ତ ଫିମ୍ପି ନ ଥିଲା । ସେଇ ରୋଟିରେ ଆମେ ଫିମ୍ପିକୁ ଦେଖିଲେ । ତୁ କହୁଚୁ, ଫିମ୍ପି ରୋଟିରୁ ଆସିଲା ନାହିଁ । ତେବେ କୋଉ ଫିମ୍ପି ଏଇ ଫିମ୍ପିକୁ ଜନ୍ମ କଲା ?"

—ମିତା ବଡ଼ ବିଶ୍ୱାସର ସହିତ ଏଇ ପ୍ରଶ୍ନ କଲା ।

ମା' ପ୍ରଶ୍ନଟିକୁ ବହୁତ ଭଲ ପାଇଲେ । କିନ୍ତୁ ଏହାର ଉତ୍ତର ଦେବାକୁ ହେଲେ ମୋଟା ବହିର ଚଳିବ ନାହିଁ । ସରୁ ବହିର ନକଲେ ଏହାର ଉତ୍ତର ଦେଇ ହେବ ନାହିଁ । ବଡ଼ ହେଲେ, ଅଧିକ ପାଠ ପଢ଼ିଲେ ମିତା ଏ ଉତ୍ତର ପାଇ- ଯିବ ବୋଲି ମା' କହିଲେ । ତେବେ ସେ ଗୋଟେ କଥା ସୂଚେଇ ଦେଲେ । ରୋଟିଖଣ୍ଡରେ ଫିମ୍ପି ନ ଥିଲା । ଫିମ୍ପି ଅନ୍ୟ କୋଉ ଜାଗାରେ ଥିଲା । ଫିମ୍ପିର ମଞ୍ଜି ଅତି ଛୋଟ । ତା' ପବନରେ ଉଡ଼ୁ ଥାଏ । ସେଇ ଉଡ଼ୁଥିବା ଫିମ୍ପି ମଞ୍ଜି ରୋଟିରେ ଆସି ବସିଗଲା । ରୋଟିରୁ ସେ ଖାଇବା ଜିନିଷ ପାଇଲା; ଓଦା ପବନରୁ ପାଣି ପିଇବାକୁ ପାଇଲା; ଗରମ ହାଓ୍ୱା ତାକୁ ଭଲ ଲାଗିଲା ; ସେଇ ଅବସ୍ଥାରେ ସେ ରୋଟି ଉପରେ ବଢ଼ିଲା ।

## ଜୀବନର ସୁନା-କାଠି ମିଳିଗଲା

ମିତାର ମନର ଶିଲଟଟାରେ ବେଶୀ କିଛି ଲେଖା ହୋଇ ନ ଥିଲା । ସେ ଅନେକ କଥା ଜାଣିବାକୁ ଚାହୁଁ ଥିଲା । ସେ ଯାହା ଜାଣିବାକୁ ପାଉଥିଲା, ତାହା ତା' ମନର ଶିଲଟରେ ଲେଖି ହୋଇ ଯାଉଥିଲା । ଜୀବନ ବିଷୟରେ ସେ କିଛି କଥା ଜାଣି ନ ଥିଲା । ଏଇ କେତେ ଦିନ ଭିତରେ ମା' ତାକୁ ବହୁତ ଶିଖେଇ ଦେଲେ । ଆଜି ତା'ର ମନେ ହଉଚି, ସେ ଜୀବନର ସୁନାକାଠିକୁ ପାଇଗଲା ।

ବଡ଼ହେଲେ ମିଢା ଜୀବବିଜ୍ଞାନୀ ହବ ବୋଲି ସ୍ଥିର କରିନେଲା । ସେ ଜୀବବିଜ୍ଞାନରେ ଅଧିକ ପାଠ ପଢ଼ିବ । ସେ ନିଜେ ନୂଆ ନୂଆ ପରୀକ୍ଷା କରିବ; ନୂଆ କଥା ଜାଣିବ; ଲୋକଙ୍କୁ ଦେଖେଇବ । ବହି ଲେଖିବ ।

ମିଢାର ମନକଥା ଜାଣି କରି ମା ଖୁସି ହୋଇଗଲେ ।



ମୁଦ୍ରଣ : ସତ୍ୟସୁନ୍ଦର ପ୍ରେସ୍, ମଙ୍ଗଳାବାଗ, କଟକ-୨